ନେହେରୁ ବାଳ ପୁସ୍ତକାଳୟ

# ଭୂମିକମ୍ପ ଓ ବଣର ନିଆଁ

ରସ୍କିନ୍ ବଣ୍ଡ

ଅଳଙ୍କରଣ

ସୁବୀର ରାୟ

ଅନୁବାଦ

ଦୀପ୍ତିପ୍ରକାଶ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# 1

କୌଣସି ଅସୁବିଧାରେ ଜେଜେବାପାଙ୍କୁ ଖୋଜିବତ, ସେ ମିଳିବେ ଗାଧୁଆଘରେ ।

ଗୋଟିଏ ଜଙ୍ଗଲୀ ହାତୀ ଯେତେବେଳେ ଆସି ପୂରା ବଗିଚାକୁ ଦଳି ମକଚି ଦେଲା, ସେତେବେଳେ ସେ ଗାଧୁଆଘରେ ଥିଲେ । ଯେତେବେଳେ ଝଡ଼ତୋଫାନରେ ଘରର ଛାତ ଉଡ଼ିଗଲା, ସେ ଥିଲେ ଗାଧୁଆଘରେ । ସେ ସମୟରେ ବି ସେ ଗାଧୁଆଘରେ ଥିଲେ ଯେତେବେଳେ ବୁଲି ଆସିଥିବା ମାଉସୀ, ଡ୍ରେସିଂ ଟେବୁଲ୍ ଉପରେ ମୋଡ଼ିହୋଇ ଶୋଇରହିଥିବା ଅଜଗର ସାପକୁ ଦେଖି ମୁର୍ଚ୍ଛା ହୋଇଯାଇଥିଲେ । ଏଇ ସବୁ କଥାରେ ସେ ବଡ଼ ଆଶ୍ଚର୍ଯ୍ୟ ହୁଅନ୍ତି ଯେ, ଯାହାକିଛି ବି ଘଟୁଛି ସବୁ ତାଙ୍କ ଏଇ କୋଡ଼ିଏ ମିନିଟ୍ ଗାଧୁଆ ସମୟ ଭିତରେ । ସେ ଲୁଗା ପିନ୍ଧି ସାରିଲା ବେଳକୁ ସବୁକିଛି ଶେଷ- ଜଙ୍ଗଲୀ ହାତୀ ଗର୍ଜନ କରି ତା' ବାଟରେ ଚାଲିଯାଇଥାଏ, ଝଡ଼ତୋଫାନ ବନ୍ଦ ହୋଇଯାଇଥାଏ, ଛୋଟ ଅଜଗର ସାପକୁ ବି ସାନ ନାତି ରାକେଶ ନେଇ ତା' ଜାଗାରେ ଛାଡ଼ି ଦେଇଥାଏ ।

ଜେଜେବାପାଙ୍କର ଗାଧୁଆ ମାନେ, ଗୋଟେ ପୁରୁଣା ଟିଣଡ୍ରମ୍‌ରେ କେଇ ବାଲ୍‌ଟି ଗରମ ପାଣି । ସେଥିରେ ସେ ପୁଦିନାପତ୍ର ପକାଉ ଥିଲେ । ପୁଦିନା ସ୍ନାନ । ଜେଜେବାପା କହୁଥିଲେ, ଏହା ସବୁଠାରୁ ଆନନ୍ଦଦାୟକ ଗାଧୁଆ ।

ଗାଧୋଇଲାବେଳେ ଜେଜେବାପା ଗୀତ ବୋଲୁଥିଲେ ଓ ଜୋର୍ ଜୋର୍‌ରେ ପାଣି ଢ଼ାଳି ହେଉଥିଲେ । ଯେଉଁଥିପାଇଁ ବୋଧହୁଏ

ସେ ବାହାର ବିଷୟରେ କମ୍ ଜାଣିପାରୁଥିଲେ।

ସେମାନେ ଯେବେ ବଡ଼ ଭୂମିକମ୍ପର ପ୍ରଥମ ଝଟକା ଅନୁଭବ କଲେ (ଯେଉଁଟା ବହୁ ସହରକୁ ନଷ୍ଟ କରି ଦେଇଥିଲା), ସେତେବେଳେ ସେ ଗାଧୁଆଘରେ ଥିଲେ।

ଜେଜେବାପା ବର୍ମନ ଜଙ୍ଗଲ ବିଭାଗ ଚାକିରୀରୁ ଅବସର ନେବାପରେ ସେମାନେ ସପରିବାରେ ଚେରାପୁଞ୍ଜି ପାହାଡ଼ର ପାଦ ଦେଶରେ ଏକ ଛୋଟ ବ୍ୟସ୍ତମୁଖର ସହର ଶିଲଂରେ ରହୁଥିଲେ। ସହରମୁଣ୍ଡରେ ସେ ଗୋଟେ ପୁରୁଣା ଘର କିଣିଥିଲେ। ବହୁତ ବଡ଼ ଓ ବହୁତ ପୁରୁଣା ଘର। ତାଙ୍କ ପେନସନ୍ ଟଙ୍କାର ବେଶୀ ଭାଗ କେବଳ ଘର ମରାମତିରେ ଖର୍ଚ୍ଚ ହୋଇଯାଉଥିଲା। ଜେଜେମାଆ ବର୍ମନ, ବଡ଼ କଷ୍ଟରେ ଘରର ଏମୁଣ୍ଡରୁ ସେମୁଣ୍ଡ ହୋଇପାରୁ ଥିଲେ। କେବଳ ମମତାଜ୍ ଛଡ଼ା ଆଉ କେହି ଚାକର ବାକର ନଥିଲେ। ଜେଜେବାପାଙ୍କର ଜଙ୍ଗଲ ବିଭାଗ ଚାକିରୀକାଳରୁ ମମତାଜ ତାଙ୍କ ପରିବାର ସହ ଥିଲା; ତା'ର ମଧ୍ୟ ନିଜର ଚାରୋଟି ପିଲାଛୁଆ ଥିଲେ।

ବର୍ମନଙ୍କର ନାତିନାତୁଣୀମାନେ ତାଙ୍କ ସହ ରହୁଥିଲେ। ଏଗାର ବର୍ଷର ରାକେଶ, ପ୍ରତିଦିନ ତା' ସାଇକେଲ୍ ଚଢ଼ି ସ୍କୁଲକୁ ଯାଏ। ଛ'ଅ ବର୍ଷର ମୁକେଶକୁ ସାତ ବର୍ଷ ନହେବାଯାଏଁ ସ୍କୁଲକୁ ଯିବନାହିଁ ବୋଲି ସେ ମନା କରିଦେଇଥିଲା। ତିନି ବର୍ଷର ଡଲି, ତା'ଜେଜେମା' ସହିତ ବାଡ଼ିରୁ ଘରଯାଏଁ ନସରପସର ହେଉଥିଲା, କୁକୁଡ଼ା ଛୁଆମାନଙ୍କୁ ଓ ଛୁଆ କୁକୁରକୁ ଖାଇବାକୁ ଦେବାରେ ତାଙ୍କୁ ସାହାଯ୍ୟ କରୁଥିଲା ଓ ଯେଉଁ ଛେଳିଛୁଆଙ୍କୁ ଜେଜେବାପା ଦୁଧ ଖାଇବାକୁ ଦେବାପାଇଁ କହୁଥିଲେ, ସେତକ ହେଉ ନଥିଲା।

ଏଇ ପିଲାମାନଙ୍କର ମା' ଡଲିର ଜନ୍ମ ସମୟରେ ମରି ଯାଇଥିଲେ; ଏବଂ ତାଙ୍କ ବାପା ବର୍ମନବାବୁ କିଛି ମାଇଲ୍ ଦୂରସ୍ଥ ଏକ ଚାହା କମ୍ପାନୀରେ କାମ କରୁଥିଲେ, ଯେଉଁଠି ଗୋଟିଏ ବି ସ୍କୁଲ୍ ନଥିଲା। ତେଣୁ ପିଲାମାନେ ଜେଜେବାପାଙ୍କ ସହ ରହୁଥିଲେ,

ଯିଏକି ସଂସାରର କୌଣସି ଜିନିଷଠାରୁ ସେମାନଙ୍କୁ ଅଲଗା କରୁନଥିଲେ। ପ୍ରତି ତିନି ବର୍ଷରେ ଥରେ ଭାରତର ଏଇ ଭାଗର ଭୂମି ଥରି ଉଠୁଥିଲା, କିନ୍ତୁ ଏଇ ତିରିଶ ବର୍ଷ ଧରି ସେମିତି ବଡ଼ଧରଣର ଭୂମିକମ୍ପ ହୋଇନଥିଲା।

"ଭୂମିକମ୍ପ ସମୟରେ ତମେ କ'ଣ କରୁଥାଅ?" ରାକେଶ ପଚାରିଲା, ଯିଏକି ଗତ ଭୂମିକମ୍ପ ବିଷୟରେ ଶୁଣିଥିଲା।

"ସେତେବେଳେ ବିଶେଷ କିଛି କରିବାର ନଥାଏ," ଜେଜେ ବାପା କହିଲେ। "ସମସ୍ତେ କେବଳ ଜଲ୍‌ଦି ଜଲ୍‌ଦି ବାହାରକୁ ପଳାନ୍ତି।"

"ମୁଁ କିନ୍ତୁ ଶେଷ ହେବା ପର୍ଯ୍ୟନ୍ତ ମୋ' ବିଛଣାରେ ପଡ଼ି ରହିବି", ରାକେଶ କହିଲା।

"ମୁଁ ମୋ' ବିଛଣା ଭିତରେ ପଶି ରହିବି," ମୁକେଶ କହିଲା। "ସିଏ ମୋତେ ସେଠାରେ ଖୋଜି ପାଇବ ନାହିଁ।"

"କିନ୍ତୁ କବାଟ ବନ୍ଧ ପାଖରେ ଠିଆ ହୋଇ ରହିବା ହିଁ ସବୁଠୁଁ ଭଲ," ଜେଜେମାଆ କହିଲେ। "ଯଦି ତୁ ଭୂମିକମ୍ପର ଚିତ୍ର ଦେଖିବୁ, ସେଥିରେ ଦେଖି ପାରିବୁ ଯେ କବାଟ ବନ୍ଧ ହିଁ ସବୁବେଳେ ଠିକ୍ ଥାଏ।"

ତେବେ ଯାହାହେଉ, ଶିଲଂ ଏମିତି ଏକ ଜାଗାଥିଲା ଯେଉଁଠି ମଝିରେ ମଝିରେ ଭୂମିକମ୍ପ ହେଉଥିଲା ଓ ପରିବାରର ଲୋକେ ସେଇଠି ହିଁ ରହିବାକୁ ଭଲ ପାଉଥିଲେ। ସେଠାରେ ଗୋଟିଏ ଝରଣା ଓ ଖୁବ୍ ସୁନ୍ଦର ବଜାର ଥିଲା ଜେଜେମାଆଙ୍କ ବଗିଚା ବହୁତ ପ୍ରଜାପତି, ଚଢ଼େଇ ଓ ବିଦେଶୀ ଗଛପତ୍ରରେ ଭରା ଥିଲା। ଏସବୁ ସାଙ୍ଗରେ ଫଳଗଛ ବି ଥିଲା, ଯେଉଁ ଗଛଗୁଡ଼ାକୁ ଚଢ଼ିବାରେ ବହୁତ ମଜା ଆସୁଥିଲା। ରାକେଶ ସାଇକେଲରେ ସହରଯାକ ଘୂରିବାକୁ ବହୁତ ଭଲ ପାଉଥିଲା। ମୁକେଶ ଯେତେବେଳେ ମମତାଜର ପିଲା ଦୁଇଟିଙ୍କ ସହ ଧୂଳି ମାଟିରେ କୁସ୍ତିକସରତ୍ କରୁନଥିଲା, ସେତେବେଳେ ବଜାରର ମିଠା ଦୋକାନ ଆଡ଼କୁ ମୁହାଁଉଥିଲା। ଡ଼ଲି ପାହାଚ

ତଳର ତା' କଣ୍ଢେଇ ଘରେ ହିଁ ବ୍ୟସ୍ତ ରହୁଥିଲା ।

ଶିଲଂରେ ସମୟ ବଡ଼ ସୁନ୍ଦର ଭାବରେ କଟୁଥିଲା । କେବଳ ବଗିଚାରେ ହାତୀ ଉପଦ୍ରବ ଛଡା, ପରିବାରରେ ସେମିତି କିଛି ଗୋଟିଏ ଉତ୍ତେଜନାପୂର୍ଣ୍ଣ ଘଟଣା ଘଟିନଥିଲା । ଏବର୍ଷ ରାକେଶର ତା' ସ୍କୁଲ ସ୍ପୋର୍ଟସ୍‌ରେ ଜିତିବାଟା ହିଁ ସବୁଠାରୁ ବିଶେଷ ଘଟଣା ଥିଲା ଓ ସେଇଥିପାଇଁ ତାକୁ ଛୋଟ କପ୍‌ଟିଏ ପ୍ରଦାନ କରାଯାଇଥିଲା- ବହୁତ ଛୋଟ, ଯେଉଁଟାକୁ ସେ ତା' ସାନ ଉଭଣୀ ଡଲିକୁ ତା' କଣ୍ଢେଇଘରେ ରଖିବା ପାଇଁ ଦେଇଦେଇଥିଲା ।

ଏମିତି ଭିତରେ ଦିନେ ସକାଳେ, ଜେଜେବାପା ଯେତେବେଳେ ଗାଧୋଉଥିଲେ, ପୂରା ସହରଟା ହଠାତ୍ ନୀରବ ଓ ନିସ୍ତବ୍ଧ ହୋଇଗଲା....



# 2

ଜେଜେବାପା କିଛି ଜାଣିପାରିଲେ ନାହିଁ, କାରଣ ସେ ପାଣି ଢ଼ାଳି ହେଉଥିଲେ ଓ ଗୀତ ଗାଉଥିଲେ; କିନ୍ତୁ ଜେଜେ ମା', ଯିଏକି ତାଙ୍କ ବଗିଚାର ଗୋଲାପ ଗଛଗୁଡ଼ିକୁ ସଜାଉଥିଲେ, ଟିକିଏ ଅଟକିଗଲେ, ଉପରକୁ ଦେଖିଲେ। ଚଢ଼େଇଗୁଡ଼ା କାହିଁକି ଯେ ଅଚାନକ ଚୁପ୍ ହୋଇଗଲେ? କେବଳ ଗଛ ଉପରେ ବସିଥିବା ଚଢ଼େଇଗୁଡ଼ା ନୁହେଁ, କୁକୁଡା ଘରେ ଥିବା ପକ୍ଷୀଗୁଡ଼ା ମଧ୍ୟ। ଛେଳିଟା ଗଛରୁ ପତ୍ର ଚୋବାଇବା ବନ୍ଦ କରିଦେଲା। କାନ୍ଥ ଉପରେ ଚଢ଼ି ଯେଉଁ କୁକୁରଟା ଗୁଣ୍ଡୁଚି ମୂଷାକୁ ଭୁକି ହେଉଥିଲା, ଚୁପ୍ ହୋଇ କାନ ପଛକୁ କରି, ମଥାକୁ ଆଗ ଦୁଇଗୋଡ଼ ମଝିରେ ଗୁଞ୍ଜିଦେଇ ତଳେ ବସି ପଡ଼ିଲା।

"ଏବେ ହସ ଖେଳର ସମୟ ନୁହେଁ," ଜେଜେ ମା' ପାଟି କରି କହିଲେ। "ମୁଁ ଆଶ୍ଚର୍ଯ୍ୟହେଲି, କ'ଣ..."

ଏବଂ ତା'ପରେ ଓଲଟାହିଁ ହେଲା। କୁକୁଡ଼ାମାନେ ରାବିବାକୁ ଲାଗିଲେ, କୁକୁର ସବୁ ଭୁକିଲେ ଏବଂ ଚଢ଼େଇ ଗୁଡ଼ା ଚେଁ-ଚାଁ ରାବି ନିଜ ନିଜର ଡେଣା ଫଡଫଡ କଲେ, ଯେମିତି ସେମାନେ ଶିକାର ହୋଇ ରହିଛନ୍ତି, କାନ୍ଥ ଉପରେ ବସିଥିବା ବିଲେଇ ଦୁଇଟି ହଠାତ୍ ଉପରକୁ ଡ଼ିଆଁ ମାରିଲେ ଓ ଆଉ ପାଖରେ ଅଦୃଶ୍ୟ ହୋଇଗଲେ।

ଜେଜେ ମା' କେଉଁଠି ଗୋଟେ ପଢ଼ିଥିଲେ ଯେ, ଭୂମିକମ୍ପର ଆଭାସ, ପଶୁପକ୍ଷୀମାନେ ମଣିଷମାନଙ୍କ ଠାରୁ ଶୀଘ୍ର ପାଇପାରନ୍ତି।

ଏବଂ ସତକୁ ସତ ତାଙ୍କର ପଶୁପକ୍ଷୀମାନଙ୍କର ରାବ-ବୋବାଳିକୁ ଲକ୍ଷ୍ୟକରିବାର ଅଧମିନିଟ୍ ଭିତରେ, ସେ ଗୋଟେ ଏକ୍ସପ୍ରେସ୍ ଟ୍ରେନର ଶବ୍ଦ ଭଳି ଧଡ଼୍ ଧଡ଼୍, ଘଡ଼୍ ଘଡ଼୍ ଶବ୍ଦ ଶୁଣିବାକୁ ପାଇଲେ।

ସେଇ ଶବ୍ଦ ଗୋଟେ ମିନିଟ୍ ଧରି ଚାଲିଲା ଓ ତା'ପରେ ମାଟିରେ ପ୍ରଥମ କମ୍ପନ ହେଲା। ସେଇ ସମୟରେ ପଶୁପକ୍ଷୀମାନେ ସତେ ଯେମିତି ପାଗଳ ହୋଇଗଲେ ଓ ବିକଟାଳ ଶବ୍ଦ କଲେ। ଗଛ ଅଗଗୁଡ଼ା ଆଗକୁ ପଛକୁ ଦୋହଲିବାକୁ ଲାଗିଲା। କବାଟଗୁଡ଼ା ପିଟି ହେଲା ଓ ଝରକାଗୁଡ଼ା ହଲିବାକୁ ଲାଗିଲା ଏବଂ ଜେଜେମା' କହିଲେ ଯେ ତା'ପରେ ପୂରା ଘରଟା ତାଙ୍କ ସାମ୍ନାରେ ଦୋହଲି ଗଲା। ସିଧା ଠିଆ ହେବା ପାଇଁ ତାଙ୍କୁ ବଡ଼ କଷ୍ଟ ହେଲା, ତା'ପରେ ସେ ବିଶ୍ୱାସ କଲେ ଯେ ହୁଏତ କମ୍ପନ, ମାଟି ଠାରୁ ତାଙ୍କ ଆଣ୍ଠୁକୁ ବେଶୀ ଜଣା ପଡୁଥିଲା।

ଏଇ ପ୍ରଥମ ଝଟକା କେବଳ ଅଧମିନିଟିଏ ଧରି ରହିଥିଲା, କିନ୍ତୁ ବହୁତ ସମୟଧରି ଥିଲା ଭଳି ଜଣାପଡୁଥିଲା। ଜେଜେମା' ଭାବିଲେ ଯେ ଜେଜେବାପା ଗାଧୁଆଘରେ ଥିଲେ, ରାକେଶ ତା'ସ୍କୁଲ ଯିବା ବାଟରେ ଥିଲା, ମୁକେଶ ମମତାଜର ପୁଅ ସହ ମାର୍ବଲ୍‌ରେ ଖେଳୁଥିଲା ଓ ଡଲି ତା' ପାହାଚତଳ କଣ୍ଢେଇଘରେ ଥିଲା; ମମତାଜ ବୋଧହୁଏ ରୋଷେଇଘରେ ପରିବା ଧୋଉଥିଲା। ଜେଜେମା' ଡଲିକୁ ନେଇଆସିବା ପାଇଁ ଘରଭିତରକୁ ପଶି ଗଲେ।

ସେ ଘରକୁ ପଶିଛନ୍ତି କି ନାହିଁ, ଘଡ଼-ଘଡ଼ ଶବ୍ଦ ଜୋର୍‌ରେ ହେଲା। ଜେଜେବାପା ଏସବୁ ଶୁଣି ପାରିଲେ ନାହିଁ, କାରଣ ସେ ଏପର୍ଯ୍ୟନ୍ତ ବି ଗୀତ ଗାଉଥିଲେ; କିନ୍ତୁ ଜେଜେମା' ଶୁଣିପାରିଲେ ଓ ଡଲି ବି। ସିଏ ଦେଖିଲା ଯେ ତା' କଣ୍ଢେଇ ଘର ହଲିବାକୁ ଲାଗିଲାଣି। ଏଇ ଘଡ଼-ଘଡ଼ ଶବ୍ଦ ସହ, ବାସନକୁସନର ଖଡ଼୍ ଖଡ଼୍ ଶବ୍ଦ ବି ଶୁଣିପାରିଲା। ଗୋଟେ ଚା' ଗିଲାସ ମେଜ ଉପରୁ ଖସି, ତଳେ ପଡି ଚୁରମାର ହୋଇଗଲା। ବୈଠକଖାନାରେ ଥିବା



ଫୁଲଦାନୀ (ତିନିଶହ ବର୍ଷ ପୁରୁଣା, ଜେଜେବାପାଙ୍କ କହିବା ଅନୁସାରେ) ର ଘୋଡଣୀ ଛିଟିକି ପଡ଼ି ତଳେ ବାଡେଇ ହୋଇଗଲା ।

ଡଲି ଯେତେବେଳେ ପ୍ରଥମ କମ୍ପନ ଅନୁଭବ କଲା, ତା' ପ୍ରିୟ କଣ୍ଢେଇକୁ ନିଜ ସାଥିରେ ନେଇ, ସ୍ୱାଭାବିକ ଭାବରେ ଧୀରେ ଧୀରେ ଯାଇ ପାହାଚ ତଳ ସନ୍ଧିରେ ପଶିଗଲା । କଣ୍ଢେଇଟିର ମଥା

ବାଳଯାକ ବାହାରି ଆସିଥିଲା ଓ ଆଖିଟିଏ ବି, କିନ୍ତୁ ଡଲି ପାଖରେ ସେହି କଣ୍ଢେଇଟି ଅନେକ ଦିନରୁ ଥିଲାରୁ ସେ ଭାବୁଥିଲା ଯେ ଏହାର ବିଶେଷ ଯତ୍ନ ନେବା ଦରକାର। ସେ ବୁଝିପାରିଲାନି, କାହିଁକି ଯେ ଘରଟା ଦୋହଲିଗଲା; କିନ୍ତୁ ସେ ଡରିଲା ନାହିଁ। ସେ ଭାବିଲା ଯେ, ହୁଏତ ଘରସବୁ ଏମିତି ହଲିଯାଏ।

ଜେଜେମା' ତାକୁ ପାହାଚ ତଳେ ଦେଖିନଥିବାରୁ ସିଧା ବୈଠକ ଖାନାକୁ ପଶିଯାଇ ଡାକିଲେ, "ଡଲି, ଡଲି! କେଉଁଠି ଅଛୁ? କାନ୍ଥରେ ଟଙ୍ଗା ଯାଇଥିବା ଘଡ଼ିଟା ବାଇଆ ହୋଇଯାଇଥିଲା ଓ ସବୁଯାକ ସମୟ ଦେଖେଇବାରେ ଲାଗିଥିଲା।

ମମତାଙ୍କ ରୋଷେଇ ଘରେ, ଆଲମାରୀରୁ ଇତସ୍ତତ ହୋଇ ଖସି ପଡୁଥିବା ଥାଳି, ଥାଳିଆ ଓ ଗିଲାସ ଗୁଡ଼ାକୁ ଧରିବାକୁ ଚେଷ୍ଟାକରୁଥିଲା।

ମୁକେଶର ଗୋଲିଗୁଡ଼ିକ ସବୁ ହଜିଗଲା, ତା' ସାଙ୍ଗମାନଙ୍କ ସହ ଖେଳୁଥିଲାବେଳେ ନୁହେଁ! ସେଗୁଡିକ ଗଡ଼ିଗଡ଼ି ଗେଟ୍ ବାହାରକୁ ଯାଇ, ରାସ୍ତାତଳକୁ ଚାଲିଗଲେ ଓ ପଡ଼ିଆରେ କେଉଁଠି ଅଦୃଶ୍ୟ ହୋଇଗଲେ, ଯେଉଁଠି କେତେଗୁଡ଼ାଏ ଫାଟ ହୋଇଯାଇଥିଲା।

ଜେଜେବାପା ଯେତେବେଳେ ଜାଣିପାରିଲେ ଯେ ସେ ଉଚ୍ଚ ସ୍ୱରରେ ଗାଇପାରୁ ନାହାନ୍ତି, ଗୀତ ଗାଇବା ବନ୍ଦ କରିଦେଲେ। ସେ ଦେଖିଲେ ଯେ ତାଙ୍କ ଗାଧୁଆ ଟିଣଡ୍ରମଟା ଖାଲି ହୋଇଯାଇଛି। ନିଶ୍ଚିତଭାବେ ସେ ଏତେ ପାଣି ଢ଼ାଳି ହୋଇନାହାନ୍ତି। ସେ ମଗ୍ ଆଣିବାକୁ ଯାଇ କିନ୍ତୁ ପାଇଲେ ନାହିଁ। ସେ ଟିଣଡ୍ରମ ଭିତରୁ ବାହାରିବାକୁ ଚାହିଁଲେ, କିନ୍ତୁ ଟିଣଡ୍ରମଟି ଆପଣା ଛାଏଁ ଉଠିପଡିଲା ଓ ତାଙ୍କୁ ପାଣିଭର୍ତ୍ତି ଗାଧୁଆ ଘର ଚଟାଣରେ କଚାଡି ଦେଲା।

"ଭୂତ!", ଜେଜେବାପା ଚିତ୍କାର କରି ଉଠିଲେ। "ତା' ଭିତରେ ଗୋଟେ ଦୁଷ୍ଟ ଭୂତ ରହି ଟିଣଡ୍ରମ ସହ ଖେଳୁଛି!"

ସେ ତଉଲିଆ ଚିପୁଡିଲେ ଓ ତାଙ୍କ କମରରେ ଗୁଡେଇ

ଦେଲେ, ତା'ପରେ ହାତ ବଢ଼େଇ ଗାଧୁଆ ଘର କବାଟ ଖୋଲିଲେ ଏବଂ ଝରକା ମାରିଲା ପରି ଆସି ଠିଆହେଲେ।

ରାକେଶ ତା' ସ୍କୁଲର ଅଧାବାଟରେ ହୋଇଥିଲା, ଦେଖିଲା ଯେ, ରାସ୍ତାରେ ତା' ସାଇକେଲ୍ ଖାଲି ହଲିବାକୁ ଲାଗୁଛି, ତା' ଆୟତ୍ତ ବାହାରକୁ ଚାଲିଯାଉଛି। ସେ ଗୋଟିଏ ବଳଦଗାଡ଼ି ସହ ଧକ୍କା ଲଗାଉ ଲଗାଉ ରହିଗଲା।

ହୁଏତ ଚେନ୍ ଖସିଯାଇଛି ଭାବି, ସେ ଦେଖିବା ପାଇଁ ଓହ୍ଲାଇପଡିଲା, କିନ୍ତୁ ସେ ଦେଖିଲା ଯେ, ରାସ୍ତାଟି ମଧ ସାଇକେଲ୍ ପରି ହଲଚଲ ହେଉଛି। କିନ୍ତୁ ଏ ହଲଚଲ ମାତ୍ର କେଇ ସେକେଣ୍ଡ ପାଇଁ ଥିଲା। ପୁନଶ୍ଚ ସବୁ କିଛି ସ୍ଥିର ହୋଇଗଲା। ଆଶ୍ଚର୍ଯ୍ୟର କଥା ଯେ ବଳଦମାନେ ଚାଲିବା ପାଇଁ ଅରାଜି ହେଉଥିଲେ।

''ତମେ ଜାଣି ପାରିଲ?'' ଶଗଡିଆ ପଚାରିଲା। ''ହଁ, ସବୁ କେମିତି ଖାଲି ହଲଚଲ ହେଉଥିଲା,'' ରାକେଶ କହିଲା। ''ଏହା କ'ଣ ଭୂମିକମ୍ପ ଥିଲା?''

''ଛୋଟ ପ୍ରକାରର,'' ଶଗଡ଼ିଆ ଉତ୍ତର ଦେଲା। ''କିମ୍ବା ଗୋଟେ ବଡ଼ ଭୂମିକମ୍ପର ସୂଚନା ଥିଲା ମାତ୍ର।''

ରାକେଶ ସାଇକେଲ ଛଡ଼ି ସ୍କୁଲକୁ ଗଲା। କ୍ଲାସ ଆରମ୍ଭ ହେବାର ଘଣ୍ଟି ବାଜିବାକୁ ଏବେ ଡେରି ଅଛି, ଏକତ୍ରିତ ବାଳକ ବାଳିକାମାନେ ଦଳ ଦଳ ହୋଇ କିଛିକ୍ଷଣ ପୂର୍ବରୁ ଅନୁଭବ କରିଥିବା ଧକ୍କା ବିଷୟରେ କଥାବାର୍ତ୍ତା କରୁଥିବାରୁ ପୂରା ପଡ଼ିଆଟା ଉତ୍ତେଜନା ପୂର୍ଣ୍ଣ ଲାଗୁଥିଲା। ମନେ ହେଉଥିଲା ପ୍ରଧାନ ଶିକ୍ଷକ ଏହା ସ୍ଥିର କରିଥିଲେ ଯେ, ଦୈବାତ୍ ଯଦି ପୁଣିଥରେ କମ୍ପନ ହୁଏ, ପିଲାମାନେ ସ୍କୁଲର ପୁରୁଣା ଘରଠାରୁ ବାହାରେ ହିଁ ସୁରକ୍ଷିତ ରହିବେ; ସେ ତେଣୁ ସ୍କୁଲ ଘଣ୍ଟା ବଜାଇବାରେ ଡେରି କରୁଥିଲେ। ପ୍ରକୃତରେ ଡେରି ହେଉଥିବା ଯୋଗୁଁ ପିଲାମାନେ ଆନନ୍ଦିତ ହେଉଥିଲେ। କିନ୍ତୁ ଯେତେବେଳେ ପନ୍ଦର ମିନିଟ୍ ବିତିଯିବା ପରେ ମଧ୍ୟ ଆଉ କିଛି

ଘଟିଲା ନାହିଁ, ଏବେ ସ୍କୁଲ ଖୋଲିବାର ସମୟ ବୋଲି ପ୍ରଧାନ ଶିକ୍ଷକ ସ୍ଥିରକଲେ। ଛୁଟି ହୋଇଯାଉ ବୋଲି ପ୍ରତିବାଦ ହେଲା। ରାକେଶ ତାଙ୍କ ଶ୍ରେଣୀ ତରଫରୁ କହିବା ପିଲା ଥିଲା।

''ସାର୍, ଗତବର୍ଷ ଯେବେ ଛାତ ଉଡ଼ିଯାଇଥିଲା, ଆପଣ ଆମକୁ ଗୋଟେ ଛୁଟି ଦେଇଥିଲେ।''

''କିନ୍ତୁ ଛାତ ଉଡ଼ି ଯାଇନି;'' ପ୍ରଧାନ ଶିକ୍ଷକ ଦୃଷ୍ଟି ପକାଇଲେ, କାଳେ କାନ୍ଥ ପଡ଼ି ଯାଇଛି କି? ଯେବେ କାନ୍ଥ ପଡିଯିବ, ଆମେ ଗୋଟେ ଛୁଟିକଥା ଚିନ୍ତା କରିବା।''

ପ୍ରଧାନ ଶିକ୍ଷକ କହିଲେ, ''ତମେ ଶ୍ରେଣୀ ଗୃହକୁ ଯାଅ।''

****

''ଭଲକରି ଟିକେ ଗାଧୋଇ ପାରିଲି ନାହିଁ,'' ଜେଜେବାପା ଅସନ୍ତୋଷରେ କହିଲେ।

''ଟିଣଡ୍ରମରେ ବେଶି ପାଣି ନଥିଲା।''

''ତମେ କ'ଣ ଏହା ଜାଣି ପାରିଲ ନାହିଁ? ''ଜେଜେ ମା' ପଚାରିଲେ।''

''ଜାଣିବି କ'ଣ?''

''ଭୂମିକମ୍ପ।''

କିଛିବିତ ଜାଣି ପାରିଲି ନାହିଁ। ତୁମେ ନିଶ୍ଚିତ ରୂପେ ଏହା କଳ୍ପନା କରିଥିବ।'' ''ଠିକ୍ଅଛି, ସମସ୍ତ ବାସନକୁସନ ଭାଙ୍ଗିଯାଇଛି, ତା' ସଙ୍ଗେସଙ୍ଗେ ତମେ ବର୍ମାରୁ ଆଣିଥିବା ଫୁଲଦାନୀଟା ବି। ତମେ ଦ୍ୱିପ୍ରହରର ଭୋଜନ କଦଳୀପତ୍ରରେ ଖାଇପାର, କିମ୍ବା ଡଲିର ଖେଳଣାସେଟ୍କୁ ବ୍ୟବହାର କରିପାର।''

''ମୁକେଶ ଓ ଡଲି କେଉଁଠି ଅଛନ୍ତି?''

''ଡଲି ପାହାଚ ତଳେ ଅଛି, ଏହା ହେଉଛି ତା'ର ପ୍ରିୟ ଜାଗା। ମୁକେଶ ବାହାରେ, ମମତାଙ୍କର ବଡ଼ପୁଅ ସାଥିରେ ଖେଳୁଛି। ମନେ ହେଉଛି ସେଇ କମ୍ପନ ତାଙ୍କର କିଛି କ୍ଷତି କରିନି। କିନ୍ତୁ

ମୁଁ ଆଶା କରୁଛି ସେଇ ଧକ୍କା ଯେମିତି ରାକେଶର ସ୍କୁଲର କିଛି କ୍ଷତି କରିନଥାଉ।''

''କିଛି ହୋଇନି, ଏହା କେବଳ ଆମ ମନର ଭାବନା।''

''ଯେତେବେଳେ ତମେ ଗାଧୋଉଥାଅ, କେବେବି କିଛିଆଡ଼କୁ ଧ୍ୟାନ ଦିଅନି। ସମସ୍ତେ ଏକଥା ଜାଣି ପାରିଲେ......କୁକୁଡାମାନଙ୍କ ସମେତ। ନାଡ଼ି ସଞ୍ଚାଳନ ବାଧାପ୍ରାପ୍ତ ହେବାଯୋଗୁଁ ସେମାନେ କଷ୍ଟ ପାଇଲେ ଓ କିଛିଦିନ ପାଇଁ ଅଣ୍ଡା ଦେବାକୁ ତାଙ୍କୁ କଷ୍ଟ ହେବ।'' ଜେଜେମା' ଘର ଚାରିପାଖରେ ବୁଲି କାନ୍ଥରେ ଅନେକଗୁଡ଼ାଏ ଜାଗାରେ ଫାଟ ହୋଇଯାଇଥିବାର ଲକ୍ଷ୍ୟକଲେ ଓ ସେଇ ଗୁଡ଼ାକୁ ଜେଜେବାପାଙ୍କୁ ଦେଖାଇଲେ।

''ସେଗୁଡିକ ଆଗରୁ ଥିଲା,'' ଜେଜେବାପା କହିଲେ, ''ସେଗୁଡିକ ଅନେକ ବର୍ଷ ଧରି ରହିଛି।''

''ଠିକ୍‌ଅଛି, ମୁଁ ଆଗରୁ ସେଗୁଡିକୁ ଦେଖିନଥିଲି। ଯାହାବି



ହେଉ ଏବେ ସମୟ ଆସିଛି। ଆମେ ଏ ଘର ଛାଡ଼ିଦେବା। ଏହା ବହୁତ ବଡ଼ ଓ ଯତ୍ନ ନେବାରେ ବି ବହୁତ ଟଙ୍କା ଲାଗୁଛି।''

''ମୁଁ ଭାବୁଛି ଆମେ କଲିକତାରେ ରହିପାରିବା। କିନ୍ତୁ ତମେ ଛୋଟ ଫ୍ଲାଟ୍‌ଟିଏରେ ରହି ପାରିବ ନାହିଁ ଏବଂ ତମେ ଜନଗହଳିରେ ଅଭ୍ୟସ୍ତ ନୁହଁ।''

ମୁଁ ଅନ୍ୟ କୌଣସି ପାହାଡ଼ିଆ ଅଞ୍ଚଳ କଥା ଭାବୁଥିଲି, ଯେଉଁଠି ସେମାନେ ଭୂମିକମ୍ପର ସମ୍ମୁଖୀନ ହେଉନାହାନ୍ତି। ଆମେ ଏହି ଜାଗାକୁ ବିକି ଦେଇ, ଦାର୍ଜିଲିଂ କିମ୍ବା କାଲିମ୍‌ପଙ୍ଗରେ ଗୋଟେ ଘର କିଣିନିଅନ୍ତେ ଅବା ଭଡ଼ା ନେଇ ଯାଆନ୍ତେ।''

''ତା'ପରେ ଭଗବାନଙ୍କୁ ଡାକନ୍ତେ ଯେ, ଆଉ ଭୂମିକମ୍ପ ନ ହେଉ।'' ଜେଜେବାପା କହିଲେ, ''ବିନାଶକୁ କେହି କିଣିଆଣେନି।''

ସେମାନେ ଶୁଣିଲେ, ମୁକେଶ ବଗିଚାରେ ପାଟିକରୁଛି।

ସବୁଦିନପରି ସେ କିଛି ଗୋଟେ ବଦମାସି କରୁଥିବ, ''ଜେଜେମା'' ରାଗିକରି କହିଲେ। କ'ଣପାଇଁ ଏତେ ପାଟିତୁଣ୍ଡ ହେଉଛି ଦେଖିବା ପାଇଁ ଚାଲିଗଲେ।

ମୁକେଶ ଗୋଟିଏ ଚଢ଼େଇ ବସା ଓ କେତେଗୁଡ଼ିଏ ଭଙ୍ଗା ଅଣ୍ଡା ଘାସ ଉପରୁ ପାଇଥିଲା ଓ ଦୁଇଟି କ୍ରୋଧ ଜର୍ଜରିତ ଶୁଆ, ଶାରୀ ତାକୁ ଆକ୍ରମଣ କରୁଥିବାରୁ ସେ ଚିତ୍କାର କରୁଥିଲା।

''ସେ ଚଢ଼େଇ ବସାକୁ ତୁ କ'ଣ କରିବୁ?'' ଜେଜେମା' ଜୋର କରି ପଚାରିଲେ।

''କିଛି ନୁହେଁ।'' ମୁକେଶ କହିଲା, ''ଯେତେବେଳେ ସବୁ କିଛି ହଲିବାକୁ ଲାଗିଲା, ଏହା ଗଛ ଉପରୁ ପଡ଼ିଗଲା।''

''ତାହା ହିଁ ହେବାର ଥିଲା। କିନ୍ତୁ ଚଢ଼େଇବସାକୁ ଛାଡ଼ି ପଳେଇ ଆ', ନଚେତ୍ ଚଢ଼େଇମାନେ ସତରେ ତୋ' ପଛରେ ଗୋଡ଼ାଇବେ।'' ଟଗଲା ଛୁଆ କୁକୁରଟା ଦେଖିବା ପାଇଁ ଦୌଡିଗଲା ଯେ, କାହା କାରଣରୁ ଏମିତି ସବୁ ହଲଚଲ ହୋଇଯାଇଥିଲା।

ସେ ଓ ପଡ଼ିଶା ଘରର କୁକୁର କବାଟ ବନ୍ଧ ପାଖରୁ ପରସ୍ପରକୁ ଭୁକିବାକୁ ଲାଗିଲେ। ‘‘ତୋ’ର ଏତେ ସାହସ, ମୋ ଘର ଭାଙ୍ଗିଦେଲୁ ?’’ ସେମାନେ ବୋଧହୁଏ ଏହାହିଁ କହୁଥିଲେ। ଶେଷରେ ଯୁକ୍ତିକରି ଥକି ଗଲାପରେ, ଛୁଆ କୁକୁରଟା ଭଣ୍ଡାର ଘର ଭିତରକୁ ପଶିଗଲା, ମୂଷା ଖୋଜିବାପାଇଁ। ସେ ମୂଷା ଧରିବାରେ ବଡ଼ ପାରଙ୍ଗମ ଥିଲା।

ବଜାର ଭିତରେ ପ୍ରତ୍ୟେକ ଲୋକ କିଛିକ୍ଷଣ ପୂର୍ବରୁ ହୋଇଥିବା ଭୂମିକମ୍ପ ବିଷୟରେ ହିଁ କଥାବାର୍ତ୍ତା ହେଉଥିଲେ। କିଛି ଗୋଟାଏ ବଡ଼ ଧରଣର କ୍ଷୟକ୍ଷତି କିମ୍ବା ବଡ଼ କିଛି ଗୋଟାଏ ଭାଙ୍ଗି ଯାଇ ନଥିବାରୁ ସମସ୍ତେ ଭାବୁଥିଲେ ଯେ ଏହା ଗୋଟାଏ କୌତୁକପୂର୍ଣ୍ଣ ଘଟଣା ଥିଲା। କିନ୍ତୁ ସେଠାରେ ଥିବା କିଛି ବୟସ୍କ ଲୋକ ତିରିଶ ବର୍ଷ ତଳେ ହୋଇଥିବା ଭୂମିକମ୍ପ କଥା ମନେପକାଉଥିଲେ, ଯେଉଁଥିରେ ସେମାନେ ସାଙ୍ଗସାଥୀ, ବନ୍ଧୁପରିବାର ଓ ଘରଦ୍ୱାର ହରାଇଥିଲେ। ସେଇ ଭୂମିକମ୍ପରେ ଶହଶହ ଘର ଭାଙ୍ଗି ଯାଇଥିଲା। ସେମାନେ ଜାଣିଥିଲେ ଯେ ଛୋଟ ଭୂମିକମ୍ପ ପଛରେ ଆଉ ଏକ ବଡ଼ ଆସେ, ବଡ଼ ଦୁଃଖଦାୟକ କମ୍ପନ-ସେମାନେ ସେହି ଭୟଙ୍କର ପରିସ୍ଥିତିର ଆଶଙ୍କା କରୁଥିଲେ। ସେଠାରେ କଥା ପଡ଼ିଥିଲା ଯେ; ଜେଲ୍ ଘର ଧସି ଯିବ ଓ କଇଦୀମାନେ ଲୁଚି ପଳେଇଯିବେ, ଶକ୍ତିଶାଳୀ ବ୍ରହ୍ମପୁତ୍ର ନଦୀ ତା’ର ସ୍ୱାଭାବିକ ଆଚରଣ ବଦଳେଇବ ଓ ପୂରା ଆସାମକୁ ଜଳମଗ୍ନ କରିବ, ଯେବେ କୁମ୍ଭୀରମାନେ ସହର ଓ ଗାଆଁରେ ପଶି ଆକ୍ରମଣ କରିବେ, ବରଫଖଣ୍ଡ ସବୁ ହିମାଳୟରୁ ଖସିପଡ଼ିବ ଓ ପୃଥିବୀ ଫାଟିଯିବ ଏବଂ ପୂରା ଶିଲଂକୁ ଗିଳିଯିବ।

‘‘ସୃଷ୍ଟି ବିନାଶର ସମୟ ପାଖେଇ ଆସିଲାଣି,’’ ଜଣେ ପୁରୋହିତ ବଜାର ମଧ୍ୟରେ ଘୋଷଣା କଲେ।

‘‘କୁହନ୍ତୁ, ପୁରୋହିତ ମହାଶୟ, ଆମେ ଏଥିପାଇଁ କ’ଣ କରିବା ଉଚିତ ?, ‘‘ଜଣେ ଦୋକାନୀ ପଚାରିଲା।

‘‘ନିଜର ପ୍ରାୟଶ୍ଚିତ କର,’’ ପୁରୋହିତ କହିଲେ।

''ପରମାତ୍ମାରେ ଧ୍ୟାନ ଲଗାଅ।''

ଚାଲାକ ଲୋକଟିଏ ଯାଉଯାଉ କହିଲା, ''ଗ୍ରାହକମାନଙ୍କୁ ଠକାଅନାହିଁ।''

''ବଞ୍ଚିରହିବା ପାଇଁ ତୁମେ ଏମିତି କ'ଣ କାମ କରିଲ କି,'' ଦୋକାନୀ ବଡ଼ ପାଟିରେ କହିଲା, ''ତୁମର ଏବେ ମଧ୍ୟ ମୋତେ କୋଡ଼ିଏ ଟଙ୍କା ଦେବାର ଅଛି!''

ବର୍ମନ ଘରକୁ ଫେରିଆସିଲା ପରେ, ପରିବାରର ସମସ୍ତେ ଶାନ୍ତିରେ ଦ୍ୱି'ପ୍ରହରର ଭୋଜନ ଖାଇବସିଲେ। ଶାନ୍ତି ବେଶି ସମୟ ଧରି ରହି ପାରିନଥିଲା, କାରଣ ଡଲି ଜାଣିବାକୁ ଚାହିଁଲା ଯେ ମୁକେଶ ଥାଳିରେ କ'ଣ ଅଛି (ଯଦିଓ ସେଥିରେ ତା'ନିଜଠାରୁ କିଛି ଅଲଗା ନଥିଲା) ଏବଂ ଯେତେବେଳେ ତାକୁ ନିଜର ଖାଦ୍ୟ ଖାଇବାକୁ କୁହାଗଲା, ସେ ରାଗରେ ଫୋପାଡ଼ି ଦେଲା।

''ଏଇ ପିଲାମାନେ,'' ଭାତ ଓ ଶିମ ତରକାରୀ ଜଲ୍‌ଦି ଜଲ୍‌ଦି ଖାଉ ଖାଉ, ଦୀର୍ଘ ନିଶ୍ୱାସ ଛାଡ଼ି ରାକେଶ କହିଲା- ''ସେମାନେ କେତେବେଳୁ ସ୍କୁଲକୁ ଗଲେଣି।''

''ତୋ'ର ସ୍କୁଲକୁ ଫେରିବାର ବେଳ ହୋଇଗଲାଣି,'' ଜେଜେମା' କହିଲେ, ''ଦେଢ଼ଟା ବାଜିଲାଣି।''

''ଖେଳଛୁଟି ପରେ ଆମର ସ୍କୁଲ ନାହିଁ। ଯଦିବା ଆମେ ଭୂମିକମ୍ପ ପାଇଁ ଛୁଟି ପାଇଲୁ ନାହିଁ, ତେବେ ଆମେ କ୍ରିକେଟ ଖେଳ ଦେଖିବା ପାଇଁ ଯାଉଛୁ। କଲିକତାରୁ ଗୋଟେ ଦଳ, ଲେକ୍‌କ୍ଲବ ସହ ଖେଳିବାକୁ ଆସୁଛି।''

''ମୋତେ ସାଙ୍ଗରେ ନେଇଯିବୁ?'' ମୁକେଶ କହିଲା।

''ନା, ତୁ ସବୁବେଳେ ସାଇକେଲ୍ ପଛରୁ ଗଡ଼ିଯାଉଛୁ।''

''ମୁଁ ଆଗରେ ବସିବି, ତେବେ!''

''ତୁ ଘରେ ରହ'', ଜେଜେମା' କହିଲେ। ''ଗତଥର ଫୁଟବଲ୍ ଖେଳ ଦେଖିବା ପାଇଁ ଗଲୁଯେ, ତୁ ହଜିଗଲୁ।''

''କିନ୍ତୁ ଏହାତ କ୍ରିକେଟ ଖେଳ,'' ମୁକେଶ ଯୁକ୍ତିକଲା।

''କ୍ରିକେଟ ଖେଳରେ ହଜିଗଲେ, କେହି କେବେ ଖୋଜି ପାଏନି।''

''ତୁ ମୋ ସାଙ୍ଗରେ ବଙ୍ଗାଳୀ ମିଠା ଦୋକାନକୁ ଯିବୁ?'' ଢେଙ୍କେବାପା ପଚାରିଲେ।

''ହଁ, ନେଇ ଯାଅନା,'' ମୁକେଶ କହିଲା। '' ଦା  କେଟ ଖେଳଠାରୁ ଭଲ। ଭଙ୍ଗା ସାଇକେଲ ଠାରୁ ଭଲ।''

''ଭୂମିକମ୍ପ କାହିଁକି ହୁଏ?'' ରାକେଶ ପଚାରିଲା।



''ତେବେ ଶୁଣ'', ଜେଜେବାପା କହିଲେ, ''ପୃଥିବୀ ଦୀର୍ଘକାଳ ଧରି ରହିଛି- ସହସ୍ର ବର୍ଷ ଧରି- ଏବଂ ଏତେ ପୁରୁଣା ହୋଇଯିବା ଫଳରେ ବେଳେବେଳେ ସେ ସଙ୍କୁଚିତ ପ୍ରସାରିତ ହୁଏ....।''

''ତମେ ବି ସହସ୍ର ବର୍ଷର ? ମୁକେଶ କଥା ମଝିରେ ପଚାରି



ବସିଲା। "ତାହା ନୁହେଁ- ତାହା ନୁହେଁ," ଜେଜେବାପା କହିଲେ। "କିନ୍ତୁ ମୋ'ରି ପରି ପୃଥିବୀ ମଧ୍ୟ ଟିକେ ଭିଡ଼ିମୋଡ଼ି ହେବାପାଇଁ ଭଲପାଏ ଏବଂ ଯେବେ ତାହା କରେ, ପୃଥିବୀର ଉପରି ଭାଗ ଜୋରରେ ହଲିଯାଏ- ଆମେ ତାକୁ ଭୂମିକମ୍ପ କହୁ।"

"କିନ୍ତୁ ଏଇ ଜାଗାରେ କାହିଁକି ପ୍ରସାରିତ ହୁଏ?" ରାକେଶ ପଚାରିଲା। "ଏହା ଯେକୌଣସି ଜାଗାରେ ପ୍ରସାରିତ ହୋଇପାରେ ଏବଂ ହୁଏ ମଧ୍ୟ। ଟୋକିଓ, ସାନଫ୍ରାନ୍‌ସିସ୍କୋ, ଇରାନ୍, ପ୍ରଶାନ୍ତ ମହାସାଗରର ଦକ୍ଷିଣରେ ଥିବା ଦେଶ ଗୁଡ଼ିକ, ଇଟାଲି, ତୁର୍କି-ପୃଥିବୀର କୋଣରେ ଥିବା ଦେଶଗୁଡ଼ିକରେ ଭୂମିକମ୍ପ ନହେଉଥିବାର ବହୁତ କମ୍ ଦେଖିବାକୁ ମିଳେ। ଅବଶ୍ୟ କେତେକ ସ୍ଥାନରେ ଏହା ଅଧିକ ହୁଏ...। ସେଇ ସ୍ଥାନଗୁଡ଼ିକ ଭିତରୁ ଏହା ମଧ୍ୟ ଗୋଟିଏ, ଯେଉଁଠି ପୃଥିବୀ ପ୍ରସାରିତ ହେବା ପାଇଁ ଭଲପାଏ।"

ଦ୍ୱି'ପ୍ରହରର ଭୋଜନ ସରିଲାପରେ, ରାକେଶ ସାଇକେଲ୍ ଚଢ଼ି କ୍ରିକେଟ୍ ପଡ଼ିଆକୁ ଗଲା, ଜେଜେବାପା ଓ ମୁକେଶ ବଜାର ଆଡ଼କୁ ଚାଲିଗଲେ, ଏବଂ ଡଲି ଜେଜେମା'ଙ୍କ ପଛେପଛେ ସଫାସଫି କରିବା ପାଇଁ ଅଗଣାକୁ ଚାଲିଗଲା।

ଏହାର ଠିକ୍ ଦଶମିନିଟ୍ ପରେ ପ୍ରକୃତ ଭୂମିକମ୍ପ ହେଲା, ସହରର ଅଧାଅଧି ଭୁଷୁଡ଼ି ପଡିଲା।

ରାକେଶ ପ୍ରାୟ ଖେଳ ପଡ଼ିଆ ପାଖରେ ପହଞ୍ଚିସାରିଥିଲା, ଯେତେବେଳେ ହଠାତ୍ ରାସ୍ତା ଗୋଟେ ଆଡ଼କୁ ଦବିଗଲା ଓ ତା' ଆଡ଼କୁ ଉଠିଗଲା। ନିମିଷକେ ଦେଖିଲା ଯେ, ସେ ଖେଳପଡ଼ିଆରେ କଚାଡ଼ିହୋଇ ପଡ଼ିଛି। ମାଟିଭିତରୁ ଜୋର୍‌ରେ ଏକ ଗର୍ଜନ ଆସିବାର ଶୁଣାଗଲା ଓ ରାସ୍ତା ଖୁବ୍‌ଜୋର୍‌ରେ ହଲିବାକୁ ଲାଗିଲା, ଯେମିତି ଏକ ଦୀର୍ଘକାୟ ସାପ ମରିବାପୂର୍ବରୁ ଯନ୍ତ୍ରଣାରେ ଛଟପଟ ହୁଏ। ରାକେଶକୁ ଲାଗିଲା, ପଡ଼ିଆ ଉପରେ ଶୋଇ ରହିବା ମଧ୍ୟ ସାଇକେଲ୍ ଚଲାଇବା ଠାରୁ କଷ୍ଟକର ହୋଇପଡୁଛି।

ଯେଉଁ କ୍ରିକେଟ ଖେଳ କିଛିକ୍ଷଣ ପୂର୍ବରୁ ଆରମ୍ଭ ହୋଇଥିଲା, ପିଚ୍ ଉପରେ ଏକ ବଡ଼ ଫାଟ ହୋଇଗଲା ଫଳରେ, ଅଚାନକ ବନ୍ଦ ହୋଇଗଲା। ତା'ଭିତରେ ଯେଉଁ ପ୍ରଥମ ବୋଲର୍, ଅମ୍ପେୟାର ଓ ଫିଲ୍ଡ଼ର ମଝାମଝିରେ ଠିଆ ହୋଇଥିଲେ, ଗଳିପଡ଼ିଲେ। ତାଙ୍କୁ ଅବଶ୍ୟ ପରେ ବାହାର କରାଗଲା, କିନ୍ତୁ ପ୍ରଥମଥର ପାଇଁ କେଉଁଠି ଏମିତି ଭୂମିକମ୍ପ ଯୋଗୁଁ ଖେଳ ବନ୍ଦ ହୋଇଯାଇଥିଲା। ଯେଉଁମାନେ ହ୍ରଦପାଖ ମଣ୍ଡପରୁ ଦେଖୁଥିଲେ କିମ୍ବା ଖେଳୁଥିଲେ, ଏକ ଭୟଙ୍କର ଗର୍ଜନ ଶୁଣିଲେ। ଅଧାଅଧି ପାହାଡ଼ିଆ ଭୂମି ହ୍ରଦ ଭିତରକୁ ଖସିପଡ଼ିଲାରୁ ଏହିପରି ହେଲା। ମାଟି ସହ ଗଛ, କଣ୍ଟାବୁଦା ଚଟାଣ ସହ ଭୁଷୁଡ଼ି ପଡ଼ିଲା ଓ ପ୍ରଚଣ୍ଡ ଶବ୍ଦ ହେଲା। ମାଟି ଓ ପାଣି ଆକାଶ ଉପରକୁ ଉଠିଗଲା, ସେହି ସମୟରେ ହ୍ରଦ କୂଳରେ ଯେମିତି ବିସ୍ଫୋଟ୍ ହେଲା, ଉତ୍ତାଳ ତରଙ୍ଗ ପରି ଉପରକୁ ଉଠିଗଲା ଓ ସମତଳ ଭୂମିଆଡ଼କୁ ମାଡ଼ିଗଲା। କ୍ରିକେଟ ଖେଳାଳୀ ଓ ଦର୍ଶକମାନଙ୍କର ସୌଭାଗ୍ୟ ଯେ, ଏହି ବଡ଼ ଜୁଆର ବିପରୀତ ଦିଗକୁ ଥିଲା। କିନ୍ତୁ ଏହା ଠିଆହୋଇଥିବା କେତେଗୁଡ଼ିଏ କାର, ଚରୁଥିବା ଗାଈଗୋରୁ ଓ ଛେଳି, ଟେଲିଗ୍ରାଫ ଖୁଣ୍ଟ ଏବଂ ପୁରୁଣା ଜେଲ୍‌ର କାନ୍ଥକୁ ଭସେଇ ନେଇଥିଲା।

ଏଇଠି ସହସ୍ର ଜେଲ୍‌ନିବାସୀମାନଙ୍କ ପାଇଁ ଖସିଯିବାର ଏକ ସୁଯୋଗ ଥିଲା। କିନ୍ତୁ ଅନ୍ୟକିଛି କରିବା ପୂର୍ବରୁ ସେମାନେ ମଧ୍ୟ ଏହି ଆକସ୍ମିକ ବିପତ୍ତିର ଶିକାର ହେଲେ, କେବଳ ଜେଲ୍‌ପାଖ ଉଚ୍ଚ ପଡ଼ିଆକୁ ଦୌଡ଼ି ଯାଇଥିଲେ। ଅଚ୍ଚ କେତେଜଣ ଏହା ମଧ୍ୟ କରିପାରି ନଥିଲେ ଓ ଜନବହୁଳ ହ୍ରଦର ବିପରୀତ ସ୍ରୋତରେ ଭାସି ଯାଇଥିଲେ। ଯେଉଁମାନେ ନିରାପଦରେ ପହଞ୍ଚିପାରିଲେ, ଦଳ ଦଳ ହୋଇ ଉଦ୍ଧାର ପାଇଁ ଚିତ୍କାର କଲେ ଓ ଅପେକ୍ଷା କଲେ।

ରାକେଶ ପଡ଼ିଆ ଉପରେ ଶୋଇଥିବା ଅବସ୍ଥାରେ ଲକ୍ଷ୍ୟ କଲା! ଯେ, ଲହଡ଼ି ତା' ଆଡ଼କୁ ମାଡ଼ି ଆସୁଛି। ଏହା ଯେତେବେଳେ

ପଚାଶ ମିଟର ଦୂରରେ ଥିଲା, ସେ ବଡ଼ କଷ୍ଟରେ ଗୋଡ଼ ଉଠାଇ ପାଖରେ ଥିବା ଗଛଆଡ଼କୁ ଧାଇଁଲା ।

ଭାଗ୍ୟକୁ ଏହା ଏକ ବଡ଼ ବରଗଛ ଥିଲା, ତାର ଅନେକ ଚୁଡ଼ିଏ ଓହଳ ଥିଲା, ଯେଉଁଗୁଡ଼ିକ ତଳେ ମାଟିରେ ଲାଗି ଭିତରକୁ ଚେର ମାଡ଼ିଯାଇଥିଲା । ଏଇ ଗଛକୁ ଚଢ଼ିବା ମଧ୍ୟ ସହଜ ଥିଲା । ରାକେଶ ଯଥାସମ୍ଭବ ଉପରକୁ ଚଢ଼ିଗଲା, ପୁଣି ତଳକୁ ଚାହିଁ ଦେଖିଲା ଯେ, ପାଣି ଆସି ତଳେ ଭଉଁରୀ କାଟିଲାଣି ।



ସେ ଲକ୍ଷ୍ୟକଲା ଯେ, ତା' ସାଇକେଲ୍ କେବେଠୁ ଭାସି ଯାଇଛି, ଏବଂ ସେ ଆଉ ତାକୁ ଦେଖିପାରିଲା ନାହିଁ।

ଜେଜେବାପା ଓ ମୁକେଶ ବଜାରରେ ମିଠା ଖାଉଥିଲେ। ସେ ଦୁଇଜଣଙ୍କର ଗୋଲାପଜାମୁ ପାଇଁ ବଡ଼ ଲାଳସା ଥିଲା, ଦୁଧରେ ଗୋଲାପ ଫୁଲର ବାସ୍ନା ଓ ଚିନି ଶିରାରେ ତିଆରି ଖଇରିଆ ରଙ୍ଗ ମିଠା। ବୃଦ୍ଧ ଓ ବାଳକ ଦୁହେଁ ଯାଇ ମିଠା ଦୋକାନ ଆଗରେ ଠିଆହେଲେ ଓ ଠିଆ-ଠିଆ ରସାଳ ଗୋଲାପଜାମୁ ମିଠା ଗୁଡ଼ା ସେମାନେ ଖାଇବାକୁ ଲାଗିଲେ।

ପୂରା ବଜାରଟା ଗରମାଗରମ ଥିଲା। ଦିନ ଭିତରେ ଏହା ଥିଲା ସବୁଠାରୁ ଭିଡ଼ ସମୟ। ପନିପରିବା କିଣୁଥିବା ସ୍ତ୍ରୀ ଲୋକଙ୍କ



ଦ୍ୱାରା ରାସ୍ତାଟି ଗହଳି ଥିଲା ଏବଂ ରାସ୍ତା କଡ଼ରେ ବସିଥିବା ଦୋକାନୀମାନେ, ରାସ୍ତା ସେପାଖରେ ଥିବା ବଡ଼ ଦୋକାନୀମାନଙ୍କ ସହ ପ୍ରତିଯୋଗିତା କରି, କଂସା ପିତ୍ତଳ ଠାରୁ ଆରମ୍ଭକରି ପୁରୁଣା ଲୁଗା ଓ ପୁରୁଣା କମିକ୍ସ ସବୁ ବିକୁଥିଲେ। ସେଇ ଭିଡ଼ ଭିତରେ ସାଇକେଲ୍ ଚଢ଼ାଳୀ, ସ୍କୁଟର ଚଢ଼ାଳୀ, ଘୋଡ଼ାଗାଡ଼ି, ଅରଣା ଗାଈଗୋରୁ, ବୁଲା କୁକୁର ଏବଂ ପୋଲିସବାଲା ମଧ୍ୟ ଯିବା ଆସିବା କରୁଥିଲେ।

ମୁକେଶ ଚାରୋଟି ଗୋଲାପଜାମୁ ଓ ଜେଜେବାପା ଛଅଟି ଖାଇ ସାରିଥିଲେ, ଯେତେବେଳେ ମିଠା ଦୋକାନ ତାଙ୍କ ଆଡ଼କୁ ଧସିବାକୁ ଆରମ୍ଭ କଲା। ତା'ପରେ ଟଙ୍ଗା ଯାଇଥିବା ପାଲଟି ଖସି ପଡ଼ିଲା, ଦୋକାନୀ ସହ ମିଠା ରେକ୍‌ଟିକୁ ମଧ୍ୟ ଘୋଡ଼େଇଦେଲା। ବଞ୍ଚାଇବା ପାଇଁ ତା'ର ଗୁରୁ ଗମ୍ଭୀର ଶବ୍ଦ, ରାସ୍ତାଆଡୁ ଆସୁଥିବା ଲୋକଙ୍କର କରୁଣ ଚିତ୍କାର ଭିତରେ ଦବିଗଲା।

ଜେଜେବାପା ଓ ମୁକେଶ ଦେଖିଲେ ଯେ, ସେମାନେ ଉଠିବାକୁ ଚେଷ୍ଟା କରୁଥିବା ଦୋକାନୀ ଉପରେ ପଡ଼ିଛନ୍ତି। ସେ ଯେମିତି ନିଜକୁ ମୁକୁଳେଇଲା, ମୁକେଶ ସେଇ ପାଲ ଦେହରେ ଗୁଡ଼େଇ ହୋଇଗଲା ଓ ତାକୁ ବାହାର କରିବାକୁ ହେଲା। ପ୍ରତି ମୁହୂର୍ତ୍ତରେ ମାଟି ଖାଲି ଉଠୁଥିଲା ପଡୁଥିଲା ଏବଂ ଦୋକାନ ସବୁ ଯେମିତି କାଗଜ ପ୍ୟାକେଟ ଭଳି ହଲଚଲ ହୋଇ ଧସି ଯାଉଥିଲା।

କିଛି ସେକେଣ୍ଡ ଭିତରେ, ସୁନ୍ଦର ବଜାରଟା ଧ୍ୱସ୍ତ-ବିଧ୍ୱସ୍ତ ବଜାରରେ ପରିଣତ ହୋଇଗଲା। ରାସ୍ତାଟି ଏମିତି ଭାବରେ ତେଢ଼ା ମେଢ଼ା ହୋଇଗଲା ଯେ, ଯେଉଁ ଦୋକାନଗୁଡ଼ାକ ବାଆଁକଡ଼ରେ ଥିଲା- ଏବେ ଡ଼ାହାଣ କଡ଼କୁ ବୁଲିଗଲା ଓ ଡ଼ାହାଣ କଡ଼ଗୁଡ଼ା ବାଆଁକଡ଼କୁ ହୋଇଗଲା। କାଠଗାଡ଼ିରେ ବସିଥିବା ଗୋଟେ ଭିକାରୀ, ଯିଏକି ଚାଲିବା କ'ଣ ଜାଣିନଥିଲା, ଏବେ ଡେ଼ଇଁପଡ଼ି ଜୀବନ ରକ୍ଷା ଉଦ୍ଦେଶ୍ୟରେ ଦୌଡ଼ିବାକୁ ଲାଗିଲା। ଗାଈଗୋରୁମାନେ କେଉଁଆଡ଼େ

ଉଭେଇଗଲେ ଓ ଠିକ୍ ସେହିପରି ପୋଲିସ୍‌ମାନେ ମଧ୍ୟ। ଗୋଟେ ମୋଟର ସାଇକେଲ ମାଟି ଭିତରେ ହୋଇ ଯାଇଥିବାଗାତରେ କେଉଁଠି ଅଦୃଶ୍ୟ ହୋଇଗଲା, ଠିକ୍ ସେଇ ସମୟରେ ଗୋଟେ କାର୍ ଟାଉନ୍‌ହଲ୍‌ର ପାହାଚ ଉପରେ ଚଢ଼ିଗଲା, ଛୋଟ ଘୋଡ଼ାଗାଡ଼ିଟିଏ ମଝି ରାସ୍ତାରୁ ତଳକୁ ଖସିଗଲା; ଘୋଡ଼ାଗାଡ଼ି ଏବଂ ଚାଳକ କେହି ଆଉ ଦେଖାଗଲେନାହିଁ।

ଟାଉନ୍ ହଲ୍‌ଟି ମଧ୍ୟ ଭୁଷୁଡ଼ି ପଡ଼ିଲା, କେତେ କିରାଣୀ ଓ ଅଫିସରଙ୍କୁ ତା'ରି ଭିତରେ ପୋତିଦେଲା। ଶକ୍ତିଶାଳୀ କମ୍ପନ ଚାଲିଗଲା ଭିତରେ, ଆହୁରି ଗୁଡ଼ାଏ କୋଠାଘର ମଧ୍ୟ ଭାଙ୍ଗିଗଲା।

ଜେଜେବାପା ଆତଙ୍କିତ ହେଲେନାହିଁ। ଗୋଟାଏ ମିଠା କୁଢ଼ ଭିତରୁ ସେ ମୁକେଶକୁ ଉଠାଇଲେ ଏବଂ ଭୟାର୍ତ୍ତ ଦୋକାନୀକୁ ଠିଆ ହେବାରେ ସାହାଯ୍ୟକଲେ। ତା'ପରେ ସେ ଅନୁଭବ କଲେ ଯେ, ସହରର ପ୍ରତ୍ୟେକ ସ୍ଥାନ ଏହି ଭୂମିକମ୍ପରେ କ୍ଷତିଗ୍ରସ୍ତ ହୋଇଥିବ।

''ଚାଲ, ଆମେ ଘରକୁ ଯିବା,'' ସେ କହିଲେ, ''ଅନେକ କିଛି ଘଟିଥାଇପାରେ।''

ଝଟ୍ କରି ମୁକେଶ ହାତକୁ ଧରି ସେ ରାସ୍ତାରେ ଦୌଡ଼ିବାକୁ ଲାଗିଲେ। ମୁକେଶକୁ ତାଙ୍କ ସାଙ୍ଗରେ ଚାଲିବାପାଇଁ ଅସୁବିଧା ହେଲା। ସେ ଏହାପୂର୍ବରୁ ଜେଜେବାପାଙ୍କୁ ଦୌଡ଼ିବାର ଦେଖିନଥିଲା।

ଯେଉଁ ସମୟରେ କମ୍ପନ ସୃଷ୍ଟିହେଲା, ଡ଼ଲି ଜେଜେମା'ଙ୍କ ଧୁଆ ବାସନଗୁଡ଼ାକ ରଖିବାରେ ସାହାଯ୍ୟ କରୁଥିଲା। ଘର ଭିତରେ ସେମାନେ ଥିଲେ ବଞ୍ଚିକରି ବାହାରି ପାରିନଥାନ୍ତେ।

ଯେମିତି ପ୍ରଥମ କମ୍ପନ ଶୁଣାଗଲା, କୁକୁର ରଡ଼ି ଛାଡ଼ିଲା ଓ ଚଢ଼େଇମାନେ ଗଛ ଉପରୁ ଉଡ଼ିଗଲେ ଓ ଖୁବ୍ ଜୋର୍ ଚେଁ ଚାଁ ଶବ୍ଦ କରି ଆକାଶରେ ଚକ୍କର କାଟିବାକୁ ଲାଗିଲେ। ତା'ପରେ ଅଚାନକ ଖୁବ୍ ତୀବ୍ର ଗତିରେ ପବନ ବୋହିବାକୁ ଲାଗିଲା ଏବଂ ମାଟି ଉପ୍‌ପଡ଼୍ ହେଲା ଓ କମ୍ପିବାକୁ ଲାଗିଲା।

ତ଼ଲି ମୁହଁ ଉଠାଇ ଦେଖିଲା ଯେ, ଛାତ ଉପରର ଲମ୍ବା ଚିମିନିଟା ଖସି ପଡ଼ୁଛି।

"ଦେଖ୍ ଜେଜି!" ସେ ଜୋର୍‌ରେ କହିଲା, "ଘରଟା ପଡ଼ିଯାଉଛି। ମୋ' କଣ୍ଢେଇ ଘରର ଅବସ୍ଥା କ'ଣ ହେବ?"

"କଣ୍ଢେଇ ଘର କଥା ଚିନ୍ତା କର୍‌ନା," ଜେଜେ ମା' କହିଲେ, "କୋଠାଟା ଠିକ୍‌ରେ ରହୁ।"

ସେମାନେ ବଗିଚା ଭିତରକୁ ଦୌଡ଼ି ପଳାଇଲେ ଯେତେବେଳେ ଘରର କାନ୍ଥ ବାହାର ଆଡ଼କୁ ଧସେଇ ଆସିଲା ଓ ଛାତ ଭିତର ପଟକୁ ଧସେଇଗଲା। ଇଟା ପଥର ଓ ପଲସ୍ତରା ଖସିବାଦ୍ୱାରା ପ୍ରଚଣ୍ଡ ଶବ୍ଦ ହେଲା।

ଜେଜେ ମା' ରାସ୍ତା ସେପାଖକୁ ଅନାଇଲେ ଓ ଦେଖିଲେ ଯେ, ଅନ୍ୟ ଘରଗୁଡ଼ାକ ମଧ୍ୟ ଭୁଷୁଡ଼ି ପଡ଼ୁଛି, ଯେମିତି କେଉଁ ଏକ ଅଦୃଶ୍ୟ ରାକ୍ଷସ ଧକ୍କାମାରି ସେଗୁଡ଼ାକୁ ଧସେଇ ଦେଉଛି। ଇଂରାଜୀରେ ଏକ ପରୀକଥା ଅଛି ଯେ, ଗୋଟାଏ ମୁଣ୍ଡ ଉଡ଼ି ଉଡ଼ି କହୁଥିଲା- ମୁଁ ଧସେଇଦେବି ଓ ମୁଁ ଖସେଇ ଦେବି ଏବଂ ତମ ଘର ସବୁ ଭାଙ୍ଗିଦେବି!

ସୁସୁ ଶବ୍ଦ କରି ଅଦ୍ଭୁତ ପ୍ରକାରର ଏକ ପବନ ବୋହୁଥିଲା. କିନ୍ତୁ ଏହି ପବନ ସବୁକିଛି ନଷ୍ଟ କରିନଥିଲା; ଏହା ଭୂମିର କମ୍ପନ ହିଁ ଥିଲା, ଯିଏକି ଇଟା ଓ ପଥର, ଲୁହାଛଡ଼ ଓ ବିମ୍‌କୁ ଖସେଇ ଦେଇଥିଲା। ପୂରା ବାୟୁମଣ୍ଡଳଟା ଶ୍ୱାସରୁଦ୍ଧକରି ଧୂଳିରେ ଭରି ଯାଇଥିଲା। ସେମାନେ କଥା କହିପାରିଲେ ନାହିଁ।

କେମିତି ନାରଖାର ଦେଖାଯାଉଛି ଘରଗୁଡ଼ାକ, ଜେଜେମା' ଭାବିଲେ। ଯେମିତି କଣ୍ଢେଇ ଘର। ଏବଂ ଅନେକ ଘର, ଆଜିକୁ ଶହେ ବର୍ଷ ଧରି ଥିଲେ। ଶହେ ବର୍ଷ- ନିମିଷକେ ଚାଲିଗଲା।

ଘର ଧସିବା ବନ୍ଦ ହୋଇଗଲା। କିନ୍ତୁ ତାଙ୍କ ଘରଟା ଏତେବେଳକୁ ଇଟା ପଥରର ଗୋଟାଏ କୁଢ଼ରେ ପରିଣତ ହୋଇସାରିଥିଲା।

ଗୋଟିଏ ଖଟିଆ ଭଙ୍ଗା ଝରକା ଦେଇ ବାହାରକୁ ବାହାରିଆସିଥିଲା। ଗାଧୁଆଘର ନଳରୁ ପାଣି ବୋହି ସୋଫାସେଟ୍‌କୁ ଦବେଇ ଦେଉଥିଲା। ଏଇଠି ଗୁଡ଼ିଏ ଭଙ୍ଗା ଟେବୁଲ ଓ ଚେୟାର, ସେଇଠି ଛିଣ୍ଡା ଗାଲିଚା, ଖୁବ୍ ସୁନ୍ଦର ଟୋପିଟିଏ, ଛିଡ଼ା ଫଟା ବହିଗୁଡ଼ାଏ, ଭଙ୍ଗା ଛତାଟିଏ; ଏଇସବୁ ହିଁ ଜଣେଇ ଦେଉଥିଲା ଯେ ଏକଦା ଏଠାରେ ଏକ ଘର ଥିଲା।

ଛେଳିଟା ହଜି ଯାଇଥିଲା ଓ କୁକୁଡ଼ାମାନେ ଅଦୃଶ୍ୟ ହୋଇ ଯାଇଥିଲେ। କେବଳ ଡ଼ଲି ଓ ଜେଜେମା' ଶୁଖାଇଥିବା ଲୁଗାଗୁଡ଼ାକ ଅପରିବର୍ତ୍ତିତ ଅବସ୍ଥାରେ ଥିଲା। ସେଗୁଡ଼ିକ ଏପର୍ଯ୍ୟନ୍ତ ଶୁଖୁଥିଲା, ଫରଫର ହୋଇ ପବନରେ ଉଡୁଥିଲା।

ପବନରେ ଏକ ଚିତ୍କାର ଭାସି ଆସିଲା- ସାହାଯ୍ୟ ପାଇଁ ଚିତ୍କାର। ଲୋକେ ପରସ୍ପରକୁ ଡ଼ାକୁଥିଲେ, କେତେକ କେବଳ ଏଇଥିପାଇଁ ରଡ଼ି ଛାଡୁଥିଲେ ଯେ, ଅନ୍ୟ କିଛି କରିବାର ନଥିଲା।

ଡ଼ଲି ଓ ଜେଜେମା' ପଥର ଭଳି ବଗିଚାଭିତରେ ଠିଆ ହୋଇଥିଲେ। ଜେଜେବାପା ଓ ମୁକେଶକୁ ରାସ୍ତାରୁ ତାଙ୍କ ଆଡ଼କୁ ଦୌଡ଼ି ଆସୁଥିବାର ଦେଖିବା ପର୍ଯ୍ୟନ୍ତ ସେମାନେ କେଉଁଆଡ଼େ ଯିବାପାଇଁ ଡ଼ରୁଥିଲେ। ତା'ପରେ ସେମାନେ ଦୌଡ଼ିବାକୁ ଲାଗିଲେ। କୁକୁରଛୁଆଟି ଦେଖିଲା ଯେ ସେ ଭଣ୍ଡାର ଘର ଭିତରେ ଫାନ୍ଦି ହୋଇଯାଉଛି। ଦୁଇଟି ବଡ଼ ବାକ୍ସ ମଝିରେ ସେ ଗୋଟାଏ ବଡ଼ ମୂଷାକୁ ଧରିବାପାଇଁ କୌଶଳ କରୁଥିଲା, ସେତିକିବେଳେ ଛାତ ଖସି ଆସି ବାକ୍ସ ଉପରେ ପଡ଼ିଲା। ଚାରିଆଡ଼ ଧୂଳି ଓ ଅନ୍ଧାରରେ ଘୋଟିଗଲା। ଛୁଆ କୁକୁର ଏହା ଆଦୌ ପସନ୍ଦ କରୁନଥିଲା। ଶ୍ୱାସରୁଦ୍ଧ ହୋଇଯାଉଥିବା ସେଇ ଫାଙ୍କ ଭିତରୁ ବାହାରି ଆସିବା ପାଇଁ ସେ ଚାହୁଁଥିଲା ଓ ସେ ସେଠାରେ ବସି ରହିଲା ନାହିଁ, ବାହାରିବା ପାଇଁ ଚେଷ୍ଟା କଲା। ଛୋଟ ଛୋଟ ଗୋଡ଼ର ସ୍ୱାଭାବିକ ପ୍ରବୃତ୍ତି ଓ ମୂଷା ଧରିବା ପାଇଁ ମାଟି ଖୋଳିବାର ଅଭ୍ୟାସ, ଏବେ ତା'ର କାମରେ ଲାଗିଲା। ସେ ପଥରର କୁଡ଼କୁ ଖୋଳିବାକୁ ଲାଗିଲା ଓ ଶେଷରେ ବାହାରି ଆସିବା ପାଇଁ ସୁଡ଼ଙ୍ଗଟିଏ ତିଆରି କରିଦେଲା।

# 3

ଯେଉଁ କେତେଗୋଟି ଘର ଏପର୍ଯ୍ୟନ୍ତ ଠିକ୍ ଅବସ୍ଥାରେ ଥିଲା, ତା' ମଧ୍ୟରୁ ମମତାଜ୍‌ର କୁଡ଼ିଆଟି ଅନ୍ୟତମ। ପତଳା କାଠ ଓ ନଡ଼ା ଛପରରେ ତିଆରି, ଜୀର୍ଣ୍ଣଶୀର୍ଣ୍ଣ ଏକ କୁଡ଼ିଆ, ଏହା ଜୋର୍ ପବନରେ ଉଡ଼ିଯାଇ ପାରିଥାଆନ୍ତା। କିନ୍ତୁ ଏହା ଭୂମିକମ୍ପକୁ ବି ସମ୍ଭାଳି ନେଇଥିଲା। ଯେଉଁଠି ଇଟା ପଥର ଓ ପଲସ୍ତରାର ଘର ଭାଙ୍ଗିଗଲା, ହାଲୁକା କାଠ ତିଆରି ଘର, ଭୂମିର ଚଳନ ଅନୁସାରେ ହଲିଲା ଓ ଶୋଇଗଲା, ତଥାପି ଠିଆ ହୋଇ ରହିଲା।

ଡ଼ଲି ଚଞ୍ଚଳ କୁଡ଼ିଆ ଭିତରକୁ ଯାଇ, ମାଟିର ଚଟାଣ ଉପରେ ମମତାଜ୍‌ର ପିଲାମାନଙ୍କ ସହ ଖେଳିବାକୁ ଲାଗିଲା। ମୁକେଶ ଏ ପର୍ଯ୍ୟନ୍ତ ଜେଜେବାପାଙ୍କୁ ଜାବୁଡ଼ି ଧରିଥିଲା, ଯେଉଁଠିକି ଜେଜେମା' ଆଣ୍ଠୁରେ ଭରାଦେଇ, ଘରର ଭଙ୍ଗାରୁଜା ଜିନିଷଗୁଡ଼ାକୁ ଦେଖିବାରେ ଲାଗିଥିଲେ।

"ମୁଁ ଭାବୁଛି ରାକେଶ ନିରାପଦରେ ଥିବ," ଜେଜେବାପା କହିଲେ। "ଯଦି ତମେ ମୁକେଶ ଉପରେ ଟିକେ ନଜର୍ ରଖିବ, ମୁଁ ଯାଇ ରାକେଶକୁ ଖୋଜିବି।"

"ହଁ। ଯାଅ। ତା'ପାଇଁ ମୋ'ତେ ବଡ଼ ବ୍ୟସ୍ତ ଲାଗୁଛି," ଜେଜେ ମା' କହିଲେ। "ଏବଂ ସମ୍ଭବତଃ ଆମେ ଆଉ ଏକ ଭୂମିକମ୍ପର ସମ୍ମୁଖୀନ ହେବା!"

"ତମେ ଏଠାରେ ନିରାପଦରେ ରହିବତ?"

"ହଁ, ଆଉ କିଛି ସେମିତି ଖସିପଡ଼ିବା ଭଳି ଜିନିଷ

ନାହିଁ। ମମତାଜ କହୁଛି, ଆଜି ରାତିରେ ଆମକୁ ତା'ରି ଘରେ ହିଁ ଶୋଇବାକୁ ପଡ଼ିବ। ଏହା ସବୁଠାରୁ ନିରାପଦ ସ୍ଥାନ ପରି ମନେହେଉଛି।''

''ତମେ ଓ ପିଲାମାନେ ସେଠାରେ ଶୋଇପାର। ମୁଁ ବାହାରେ, ଖୋଲାରେ ଶୋଇବି। ଆଜି ବହୁତ ଗରମ ହେଉଛି ଓ ବର୍ଷା ହେବବୋଲି ମୁଁ ଭାବିପାରୁ ନାହିଁ।''

ଯେତେବେଳେ ରାକେଶକୁ ଖୋଜିବାପାଇଁ ଜେଜେବାପା ଚାଲିଗଲେ, ଜେଜେମା' ଓ ମମତାଜ ଧ୍ୱଂସପ୍ରାପ୍ତ ଘରେ ଅଣ୍ଡାଳି ଅଣ୍ଡାଳି, ଏବେବି କାମରେ ଲାଗିପାରିବା ଜିନିଷ ସବୁ ଖୋଜିଲେ। ଦୁର୍ଭାଗ୍ୟବଶତଃ ଅଧିକାଂଶ ଆସବାବପତ୍ର ଇଟା, ପଥର କୁଢ଼ର ବହୁତ ତଳେ ଦବି ଯାଇଥିଲା, ବହୁତ ଅଳ୍ପ ଜିନିଷ କାମରେ ଲାଗିବା ଅବସ୍ଥାରେ ଥିଲା, ଯଥା ଗୋଟାଏ ଚେପାହୋଇ ଯାଇଥିବା ପିଲାଙ୍କ ଗାଡ଼ି, ଲୁଗାପଟା ଭର୍ତ୍ତିଥିବା ଗୋଟାଏ ବାକ୍ସ, କେତେ ଟିଣ ମାଛ ଆଚାର, ଘାସ ଉପରେ ଗଡୁଥିବା କେତେଗୁଡ଼ିଏ ଫଳରସ ପାତ୍ର ଏବଂ ଜେଜେବାପାଙ୍କର ଟାଇପ୍ ରାଇଟର୍, ଯେଉଁଟା କୌଣସି ମତେ ଚାଲୁନଥିଲା। ଛୁଆ କୁକୁରଟା ଏଇ ଭଙ୍ଗାଘରେ, ସବୁ ଜିନିଷ ଉପରେ ଲୁଚି ବସିଥିଲା ବୋଲି ସେମାନଙ୍କର ଧାରଣା ନଥିଲା, ସେମାନେ ଭାବୁଥିଲେ, ସେ କେଉଁ ଆଖପାଖକୁ ଚାଲିଯାଇଥିବ ଓ ସବୁଦିନ ପରି ଭୁକୁଥିବ, ଏଇସବୁ ଅସୁବିଧାର କାରଣ ଖୋଜୁଥିବ।

''ମୋ' କଣ୍ଢେଇଗୁଡ଼ାକୁ ଖୋଜ!'' ଡ଼ଲି ଜିଦ୍ କଲା, ''ଏବଂ କଣ୍ଢେଇ ଘର ମଧ୍ୟ।''

କିନ୍ତୁ କଣ୍ଢେଇ ଘର ଆଉ ନଥିଲା।

''ଖେଳଣାଗୁଡ଼ିକ ଆଉ ନାହିଁ'', ମୁକେଶ ନିଜକୁ ସବୁ କ୍ଷେତ୍ରରେ ଦକ୍ଷତା ଥିବା ଏକ ବଡ଼ ମଣିଷ ମନେକରି ଦୃଢ଼ତା ସହ କହିଲା, ''ଆମେ ଏବେ ଗରିବ।''

''ବ୍ୟାଙ୍କ ଘରଟା ଭାଙ୍ଗି ଯାଇଛି କି?'' ଡ଼ଲି ପଚାରିଲା।

“ନିଶ୍ଚିତ ରୂପେ,” ମୁକେଶ ଏକ ପଣ୍ଡିତ ଭଳି କହିଲା।

ଜେଜେ ବାପା ଭଲ ପାଗ ହେବାର ଭବିଷ୍ୟତବାଣୀ ଶୁଣାଇଥିବା ସତ୍ତ୍ୱେ ବି ବର୍ଷା ହୋଇଥିଲା ଓ ସେମାନେ ମମତାଙ୍କର ଛୋଟ କୁଡ଼ିଆଟିରେ ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ। ଛୋଟିଆ ଘରଟିରେ ବହୁତ ଭିଡ଼ ହୋଇଗଲା।

ଉଛୁଳି ଉଠିଥିବା ହ୍ରଦର ପାଣି ନାଳରେ ଖୁବ୍ ଶୀଘ୍ର ସମତଳ ଭୂମି ଆଡ଼କୁ ବୋହିଗଲା। ରାକେଶ ଗଛଡ଼ାଳରୁ ସମୟ ଜାଣିବାକୁ ତା’ ସ୍କୁଲ ଆଡ଼କୁ ଚାହିଁଲା। ସାଧାରଣତଃ ସ୍କୁଲ ଘର ଉପରେ ଥିବା ଘଣ୍ଟା ଘରଟି ମାଇଲ୍ ମାଇଲ୍ ଧରି ଦେଖାଯାଏ, କିନ୍ତୁ ବର୍ତ୍ତମାନ ଏହାର ଚିହ୍ନବର୍ଣ୍ଣ ନଥିଲା। ବସ୍ତୁତଃ, କୋଠାର ଅନ୍ୟଭାଗ ଭାଙ୍ଗିଯିବା ଫଳରେ ଏହା ଅଦୃଶ୍ୟ ହୋଇ ଯାଇଥିଲା। ଏବେ ପ୍ରଧାନ ଶିକ୍ଷକଙ୍କୁ ତାଙ୍କ ଡ଼େସ୍କ ଚାରିପଟେ ଘେରି ରହିଥିବା ଇଟା, ପଥରର କୁଢ଼ ଭିତରୁ ବଡ଼ ବ୍ୟଗ୍ରତାର ସହ ବାହାର କରିବାପାଇଁ ଚେଷ୍ଟା କରାଯାଉଥିବ, ଯେଉଁଠି ସେ ହୁଏତ ଖୁଣ୍ଟ ଖସିବା ଦ୍ୱାରା ଚାପି ହୋଇଯାଇଥିବେ। ଶ୍ରେଣୀଗୃହଗୁଡ଼ା ଛିନ୍ନବିଚ୍ଛିନ୍ନ ହୋଇ ରୋଷେଇଘରେ ନିଆଁ ଲାଗି କୋଠାର ଅନ୍ୟଭାଗକୁ ମାଡ଼ି ଯାଇଥିବ। ସ୍କୁଲ ଚାଲିବାକୁ କେଇ ମାସ ଲାଗିଯିବ। ଅନେକ ପୁଣି ଏଠାକୁ ଫେରି ନପାରନ୍ତି।

କିଛିସମୟ ପରେ ରାକେଶ ଗଛରୁ ଓହ୍ଲାଇଲା। ସେ ତା’ ସାଇକେଲ ପାଇବା ଆଶାରେ ଚାରିଆଡ଼କୁ ଅନାଇଲା, କିନ୍ତୁ କେଉଁଠି ବି ପାଇଲା ନାହିଁ। ଅନେକଗୁଡ଼ିଏ ଜିନିଷ ଭାସିଆସି ଗଛ ମୂଳରେ ଲାଗିଥିଲା। ଗୋଟିଏ ମଲା ବିଲେଇ, ପାଣିରେ ବୁଡ଼ି ମରିଥିବା କୁକୁଡ଼ା, ଗୋଟିଏ ମାଛ ପାଣି ଛାଡ଼ିଗଲା ପରେ ଛଟପଟ ହେଉଥିଲା। ଗୋଟିଏ ସିନେମା ବିଜ୍ଞାପନ ବୋର୍ଡ଼ ପଡ଼ିଥିଲା। କାଦୁଅ ଭିତରୁ ବମ୍ବେ ଚଳଚ୍ଚିତ୍ର ଜଗତର ଏକ ପ୍ରଖ୍ୟାତ ଅଭିନେତାର ମୁହଁ ଦିଶିଯାଉଥିଲା।

ସେ ଦୂରରେ ଦେଖିଲା ଯେ, ଧୂଳିରେ ଆକାଶ ଭରିଯାଇଛି। ଏମିତି ସେ ଆଗରୁ ଜାଣିନଥିଲା, କିନ୍ତୁ ଏହି ଧୂଳି ଘର

ଧସିଯିବା କିମ୍ବା ଭାଙ୍ଗିଯିବା ଫଳରେ ସୃଷ୍ଟି ହୋଇଥିଲା, ଯଦିଓ ରାକେଶ ଜାଣୁଥିଲା ଯେ, ଏଇ ବଡ଼ ଧରଣର ଭୂମିକମ୍ପ ଚାରିଆଡ଼କୁ ପ୍ରଭାବିତ କରିଥିବ। ତା' ଜେଜେବାପା, ଜେଜେ ମା' ଓ ଭାଇଭଉଣୀମାନଙ୍କର କ'ଣ ହୋଇଥିବ ଯେ ? ସେ ଘରକୁ ଦୌଡ଼ିବାକୁ ଲାଗିଲା।

ସେ ଜାଣିପାରିଲା ନାହିଁ ଯେ, ଏଇଟା ସେଇ ଏକା ବଜାର, ଯାହା ଭିତର ଦେଇ ସେ ଦୌଡୁଥିଲା, କାରଣ ଅନେକ ପରିଚିତ ଚିହ୍ନଟ ନଷ୍ଟ ହୋଇଯାଇଥିଲା। ବଜାରର ସବୁଠାରୁ ବଡ଼ ଓ ମହଙ୍ଗା "ଗ୍ରାଣ୍ଡ ଇଷ୍ଟର୍ଣ୍ଣ" ହୋଟେଲ୍ ଓଲଟିପଡ଼ିଥିଲା। ଅନେକେ ଆଗନ୍ତୁକ ପ୍ରାଣ ହରାଇଥିଲେ, ଗୋଟାଏ ଆମ୍ବୁଲେନ୍ସ ପଡ଼ିଆରେ ଠିଆ ହୋଇଥିଲା ଓ ଗୋଟେ ନିଆଁଲିଭା ଦମକଳ ନିଆଁ ଲିଭାଇବା ପାଇଁ ଚେଷ୍ଟାକରୁଥିଲା। ସେ ଉଦ୍ଧାରକର୍ତ୍ତାମାନଙ୍କୁ ସାହାଯ୍ୟ କରିବାକୁ ଲାଗିଲା। ହେଲେ ସେ ସେଠାରେ ବିଶେଷ କିଛି କରିପାରିଲା ନାହିଁ। ତା'ପରେ ସେ ଅନୁଭବ କଲା ଯେ, ତାଙ୍କ ଘରର ଅବସ୍ଥା ହୁଏତ ଏଇଭଳି ହୋଇଥିବ। ସେ ଅଟକିଲା; ଭାଙ୍ଗିଯାଇଥିବା ଓନସ୍‌ପଶ୍ ହୋଟେଲ ଆଡ଼କୁ ଚାହିଁଲା। ସେ ତା' କାନ୍ଧରେ କାହାର ସ୍ପର୍ଶ ଅନୁଭବ କଲା। ଜେଜେବାପା ତା' ପଛରେ ଠିଆ ହୋଇଥିଲେ।

"ତୁ ଠିକ୍ ଅଛୁ ତ, ମୋ' ଗେହ୍ଲା ?"

ରାକେଶ ମଥା ହଲେଇ ହଁ କଲା।

"ଆଉ, ଘରେ ସମସ୍ତେ ?" ସେ ପଚାରିଲା।

"ସେମାନେ ଠିକ୍ ଅଛନ୍ତି।" ଜେଜେବାପା ଘରକଥା କିଛି କହିଲେ ନାହିଁ। "ସାଙ୍ଗରେ ଆ', ଏଠି ସେମିତି କିଛି ତୋର କରିବା ଭଳି ନାହିଁ। ସାଇକେଲ କ'ଣ ହେଲା ?"

"ଭାସିଗଲା। ହ୍ରଦରୁ ପାଣି ବାହାରକୁ ମାଡ଼ି ଆସିଲା। ମୁଁ ଗୋଟିଏ ଗଛ ଉପରକୁ ଚଢ଼ି ଯାଇଥିଲି।"



ସେମାନେ ନୀରବତା ସହ ଘରକୁ ଚାଲିଲେ । କିନ୍ତୁ ସେମାନଙ୍କୁ ପାଟିତୁଣ୍ଡ ଓ ବ୍ୟଗ୍ରତା ଘେରି ରହିଥିଲା ।

ରାକେଶ ଏଇ ବିନାଶ ଭିତରେ ସେମାନଙ୍କ ଘର ପାଇବାର ଆଶା ରଖିନଥିଲା । ସେ ଦୁଃଖ ଓ ହତାଶାରେ ଚାରିଆଡ଼କୁ ଚାହିଁଲା ।

"ସବୁ କିଛି ଚାଲି ଯାଇଛି," ପରିଶେଷରେ ସେ କହିଲା, "କି ଭାଗ୍ୟ....କି ବିକଟ ଭାଗ୍ୟ... !"

"ନା," ଜେଜେବାପା କହିଲେ, "ଆମେ ହିଁ ଭାଗ୍ୟବାନ ! ଆମେ ଜୀବିତ ଅଛୁ, ନୁହେଁ କି ?"

# 4

ସେଇଦିନ ମଝି ରାତିରେ, ଜେଜେବାପା ବିସ୍ମିତ ହେଲେ ଯେ, ସେ ହୁଏତ ଅନେକ ପୂର୍ବରୁ ଏହା କହିଦେଇଥିଲେ। ପୁଣି ଏକ କମ୍ପନ ହେଲା ଏବଂ ମମତାଜର ଦୁର୍ବଳ କୁଡ଼ିଆଟି ହଲଚଲ ହେଲା ଓ ଗୋଟେ ଆଡ଼କୁ ନଇଁଗଲା ଯେମିତି ଗରମ ଧୂଆଁ ପଶିଥିବା ବେଲୁନ୍‌ଟିଏ। ବଜାରରେ ଆହୁରି ଅନେକ କୋଠାଘର ଭାଙ୍ଗିଗଲା।

ଜେଜେବାପାଙ୍କର ପାଗ ବିଷୟରେ ଭୁଲ୍ ଧାରଣା ଥିଲା, କାରଣ ବର୍ଷା ବନ୍ଦ ହେଲାନାହିଁ ଓ ବାହାରେ ଶୋଇବା କଥା ତାଙ୍କୁ ଭୁଲିବାକୁ ପଡ଼ିଲା। ସମସ୍ତେ ଛିଡ଼ା ଦରି ଓ ଘରୁ ବାହାର କରାଯାଇଥିବା ବିଛଣାକୁ ସେହି କୁଡ଼ିଆରେ ତଳେ ପାରିଲେ। ବଡ଼ ଗେଞ୍ଜାପେଲା, ମମତାଜ୍, ତା' ସ୍ତ୍ରୀ ଓ ଚାରୋଟି ପିଲା ଅଧା ଜାଗା ନେଲେ ଏବଂ ଜେଜେ ମା' ଓ ପୂରା ପରିବାର ଅନ୍ୟ ଅଧା ଜାଗାରେ ଶୋଇଲେ। କେହି ଠିକ୍‌ରେ ଶୋଇପାରିଲେ ନାହିଁ, କେବଳ ମୁକେଶ ଓ ସାନ ପିଲାମାନଙ୍କ ଛଡ଼ା।

ମଝି ରାତିରେ, ଛୁଆ କୁକୁରଟା ଧ୍ୱଂସ ସ୍ତୂପ ଭିତରୁ ଖୋଳି ତାଡ଼ି ତା' ରାସ୍ତା ବାହାର କରିଦେବାରେ ସକ୍ଷମ ହେଲା। ସେ ପଲସ୍ତରା ଗୁଣ୍ଡରେ ପୂରା ଧଳା ହୋଇଯାଇଥିଲା ଓ ତା'ର ଲମ୍ବା କାନରୁ ଗୋଟିଏ ପୂରା ବାହାରକୁ ବାହାରି ଆସିଥିଲା। ସେ କୁଡ଼ିଆ ଭିତରେ ବସି ପଡ଼ିଲା ଓ ପ୍ରାୟ ରାତି ସାରା ଭୁକି ହେଲା। ବଜାରର ଅନ୍ୟ ଭାଗରେ ଥିବା ଅନ୍ୟ କୁକୁରମାନେ ମଧ୍ୟ ଭୁକିବାକୁ ଲାଗିଲେ, ତେଣୁ ପବନ, ବର୍ଷା, କୁକୁରମାନଙ୍କ ରଡ଼ି ଓ ପ୍ରତି

ମୁହୂର୍ତ୍ତରେ ଆଉ ଏକ ଭୂମିକମ୍ପର ଆଶଙ୍କାର ସମାବେଶରେ ରାତି ଭୟାନକ ମନେହେଲା ।

ଜେଜେବାପା ଲକ୍ଷ୍ୟକଲେ ଯେ, ଯଦିଓ କମ୍ପନ ସମୟରେ କୁଡ଼ିଆଟି ନଇଁଯାଇଛି, ତେବେ ଏହା ଭାଙ୍ଗିଯିବାର କୌଣସି ଲକ୍ଷଣ ଜଣା ପଡୁନାହିଁ- ଯେମିତି ଇଟା ଓ ପଥରରେ ତିଆରି କୋଠାଘର ସବୁ ଖୁବ୍ ଶୀଘ୍ର ଭାଙ୍ଗିଯାଉଛି । ବସ୍ତୁତଃ ସେମାନେ ସେତେବେଳେ ଯଦିଓ ଜାଣିନଥିଲେ ଯେ, ସବୁକିଛି ଇଟାରେ ତିଆରି ଓ ରାଜ ମିସ୍ତ୍ରୀ ମାଟିସହ ମୂଳଦୁଆ ସମତଳ କରିଛି ବୋଲି । କାଠ ତିଆରି ଘର, ଯେତେ ଦୁର୍ବଳ ହେଉନା କାହିଁକି, ଭୂମିକମ୍ପରେ ମଧ୍ୟ ଠିଆହୋଇ ରହିଲା ।



ସମସ୍ତ କ୍ଷୟକ୍ଷତିର ହିସାବ କିଛିଦିନ ଭିତରେ ଜାଣି ହେଲା ନାହିଁ, କାରଣ ଏହା ଆସାମ ଓ ବଙ୍ଗର କିଛି ଅଂଶରେ ମଧ୍ୟ ଅନୁଭୂତ ହୋଇଥିଲା। ଗୋଟିଏ ଜାଗାରେ ଏକ ରେଳଗାଡ଼ି ଓଲଟି ପଡ଼ିଲା ଓ ଅନ୍ୟ ଏକ ରେଳଗାଡ଼ି ଲାଇନଚ୍ୟୁତ ହୋଇଗଲା। ଚେରାପୁଞ୍ଜି ପାର୍ବତ୍ୟାଞ୍ଚଳରେ ହଜାରେରୁ ଅଧିକ ଲୋକ ପ୍ରାଣ ହରାଇଲେ। ବ୍ରହ୍ମପୁତ୍ର ନଦୀ ପ୍ରବଳ ବେଗରେ ବୋହି କୂଳ ଲଙ୍ଘିଗଲା ଓ ଅନେକ ଚାଷୀ ବନ୍ୟାରେ ବୁଡ଼ିଯାଇ ପ୍ରାଣ ହରାଇଲେ। ଗୋଟିଏ ଛୋଟ ସହରରେ, ଦୁଇଟି ହାତୀ ବଜାର ଭିତରେ ବସି ରହିଲେ ଓ ସକାଳ ହେବାଯାଏଁ ଉଠିବାର ନାମ ଧରିଲେ ନାହିଁ। ଜଣେ ଲୋକ ବଡ଼ ଭାଗ୍ୟଶାଳୀ ଥିଲା; ଯେତେବେଳେ ତା' ଘରର କାନ୍ଥ ପଡ଼ିଗଲା, ଟଙ୍କା ଭର୍ତ୍ତି ଗୋଟାଏ କଳସୀ ତା' ସାମନାରେ ଖସି ପଡ଼ିଲା। ଅନ୍ୟଥା କେହି କିଛି ଧନ ପାଇଲେ ନାହିଁ।

ରାତିସାରା ବର୍ଷା ହେଲା, ଏବଂ ଯଦିଓ ଭୂମିକମ୍ପର ବଡ଼ ଧକ୍କା ଚାଲିଯାଇଥିଲା, ତେବେବି ପ୍ରାୟ ପ୍ରତି ପାଞ୍ଚ ମିନିଟ୍‌ରେ ଛୋଟଛୋଟ ଧକ୍କା ଲାଗିରହିଥିଲା। ବଡ଼ମାନଙ୍କ ସହ ରାକେଶ ମଧ୍ୟ ଚାହିଁ ରହିଥିଲା। ସ୍କୁଲ ଘର ଭାଙ୍ଗି ଯାଇଥିଲା ବୋଲି ସେ ଜାଣିଥିଲା। ସେଇଥିପାଇଁ କିଛିମାସ ଧରି ସ୍କୁଲ ଚାଲିପାରିବ ନାହିଁ। ଅନ୍ୟଥା ଆଉ ବିଶେଷ କିଛି ହେବନାହିଁ।

ବଡ଼ି ଭୋର୍‌ରୁ ତା'ର ପୁରୁଣା ଛୋଟ ଷ୍ଟୋଭ୍‌ରେ ଚାହା କରିବା ପାଇଁ ମମତାଜ ଉଠିଲା। ଜେଜେବାପା ଉଠିପଡ଼ିଲେ ଓ ବାହାରକୁ ଚାଲିଗଲେ। ବର୍ଷା ଛାଡ଼ି ଯାଇଥିଲା, କିନ୍ତୁ ସୂର୍ଯ୍ୟର ରକ୍ତିମାରେ ଆକାଶ ଯେମିତି କ୍ଷତବିକ୍ଷତ ଓ ଅଶାନ୍ତ ଦେଖା ଯାଉଥିଲା। ଅନେକଙ୍କ ପାଇଁ ଏହା ଏକ ବଡ଼ ଦୁଃଖର ଦିନ ଥିଲା।

ପିଲାମାନେ ମଧ୍ୟ ଚଞ୍ଚଳ ଉଠିଲେ ଓ ଘର ଚାରିପାଖରେ ଖେଳିଲେ। ଜେଜେମା' ମାଛ ଆଚାରର ଟିଣଟିଏ କାଢ଼ିଲେ, ମାଛ ଆଚାରର ଟିଣଗୁଡ଼ିକ ଭୂମିକମ୍ପକୁ ସହି ନେଇଥିଲା। ମମତାଜର

ସ୍ତ୍ରୀ ରୁଟି ତିଆରି କରିଥିଲା। ମାଛ ଆଚାରରେ ସେମାନଙ୍କର ଭଲ ଚଳିଗଲା। ଛୋଟ କୁକୁର ମଧ୍ୟ ତାକୁ ଖୁବ୍ ଭଲପାଇଲା। ଜେଜେ ମା’ ତାକୁ ଧୋଇଦେଲେ ଓ ତା’ମଥାରେ ପଟି ବାନ୍ଧି ଦେଲେ, ଏବଂ ସେ ପୁଣି ପ୍ରକୃତିସ୍ଥ ହେଲା।

“ଆମେ ଚାଲି ଯିବାକି ?” ରାକେଶ ରୁଟିରେ ମାଛ ଆଚାରକୁ ମୋଡୁମୋଡୁ ପଚାରିଲା।

“ମୁଁ ଭାବୁଛି, ଯିବାକୁ ପଡ଼ିବ,” ଜେଜେମା’ କହିଲେ। “ଆମେ କଲିକତା ଯିବା କିମ୍ୱା ତୋ’ ବାପା ସହ ଚାହା ଫାର୍ମରେ ରହିବା।”

“ମୁଁ ଯିବାକୁ ଚାହୁଁନି,” ମୁକେଶ କହିଲା।

“ମୁକେଶ ସବୁବେଳେ ସମସ୍ତଙ୍କ ଓଲଟା କଥା କରିବାକୁ ଚାହେଁ,” ରାକେଶ କହିଲା, “ତୋ’ କଥା କ’ଣ ଡ଼ଲି ? ତୁ କ’ଣ କରିବା ପାଇଁ ଭାବୁଛୁ ?”

“ମୋ’ କଣ୍ଢେଇର ଘର ଖୋଳି ବାହାର କରିବା ପାଇଁ,” ଡ଼ଲି କହିଲା।

“ତୋ’ ପାଇଁ ଅଲଗା ନେଇ ଆସିବି,” ରାକେଶ କହିଲା, “ମୁଁ ଆଉ ଏକ ଘର ତିଆରି କରିଦେବି।”

“ଏହା କଲିକତାରେ ହିଁ ହେବ,” ଜେଜେବାପା କହିଲେ, “ସେଠାରେ ବହୁତ ସ୍କୁଲ ଅଛି। ଅନେକ ଡା’ରି।”

“ନା,” ରାକେଶ କହିଲା, “ଆମେ ଏହା ଏଇଠି ହିଁ ଚାହୁଁଛୁ। ସ୍କୁଲ୍ ପୁଣି ଖୋଲିବ।”

“କିନ୍ତୁ ଆମର ଏଠି ଘର ନାହିଁ।”

“ଆମେ ଏହା ପୁଣି ତିଆରି କରିପାରିବା, ପାରିବା ନାହିଁ କି ?”

“ହଁ,” ମୁକେଶ ସହମତି ଜଣେଇଲା, “ଆମେ ଏହା ପୁଣି ତିଆରି କରିପାରିବା।”

''ଏହା ପୁଣି ତିଆରି କରିପାରିବା,'' ଡ଼ଲି ଦୋହରାଇଲା, ''ଏହା ପୁଣି ତିଆରି କରିପାରିବା।''

''ସବୁ କିଛି କରିବାଠାରୁ କହିବା ସହଜ,'' ଜେଜେମା' କହିଲେ।

''କିନ୍ତୁ ଟଙ୍କା କେଉଁଠୁ ଆସିବ ?''

''ଆମ ବାପା କାହିଁକି ଅଛନ୍ତି ?'' ରାକେଶ ଜାଣିବାକୁ ଚାହିଁଲା। ''ତାଙ୍କର ଚାକିରୀ ଅଛି। ସେ ଆମକୁ ପୁଣି ଗୋଟାଏ ଘର ତିଆରି କରିବାପାଇଁ ଟଙ୍କା ପଠାଇପାରିବେ, ପାରିବେ ନାହିଁ କି ? ସେଇଥିପାଇଁ ହିଁ ବାପାମାନେ ଥା'ନ୍ତି।''

''ହଁ, ମୁଁ ଭାବୁଛି ସେ ପାରିବ,'' ଅନ୍ୟ ଏକ ମାଛ ଆଚାର ଟିଣ ଖୋଲୁଖୋଲୁ ଜେଜେମା' କହିଲେ। ''ସେଇଥିପାଇଁ ହିଁ ପୁଅମାନେ ଥା'ନ୍ତି।''

ଜେଜେବାପା ଯେତେବେଳେ ଫାଟକ ପାଖରେ ଠିଆ ହୋଇଥିଲେ, ଦେଖିଲେ ଯେ ତାଙ୍କ ବଢ଼େଇ ସାଙ୍ଗ ଆଜାଦ୍, ଶୁଖିଲା ମୁହଁରେ ସିଧାସପାଟ ହୋଇ ରାସ୍ତାରେ ଚାଲିଯାଉଛି। ଆଜାଦ



ହାତ ଉଠାଇ ନମସ୍ତେ କଲା ଓ ଚାଲିବାକୁ ଲାଗିଲା; ସାଧାରଣତଃ ସେ କଥା କହିବାପାଇଁ ଅଟକୁଥିଲା।

"କ'ଣ ପାଇଁ ଏତେ ଚଞ୍ଚଳ ଆଜାଦ୍ ?" ଢେଢେବାପା ପଚାରିଲେ, "ଏବେ ବଜାରରେ ବହୁତ କାମ ହେବାକୁ ଯାଉଛି। ଯେଉଁଥିରେ ତମେ ବର୍ଷେରୁ ଅଧିକ ସମୟ ଧରି ବ୍ୟସ୍ତ ରହିବ।"

"କିନ୍ତୁ କ'ଣ ପାଇଁ- କାହା ପାଇଁ ?" ଆଜାଦ ବିନା ଅଟକି କହିଲା। "ମୋ' ସ୍ତ୍ରୀ ଓ ଝିଅ ମିଲିଟେରି ଡ଼ାକ୍ତରଖାନାରେ ପଡ଼ିଛନ୍ତି- କେବଳ ଏହାହିଁ ରହିଯାଇଛି- ତେବେ ମୁଁ ଜାଣିନି ସେମାନେ ବଞ୍ଚିବେ କି ନାହିଁ...ମୋ' ଘର ଭାଙ୍ଗି ଯାଇଥିବାରୁ ମୁଁ ମଧ୍ୟ ସେଇଠି ଶୋଉଛି।"

ଏବଂ ସେଠାରେ ତା'ଭଳି ଅନେକ ଥିଲେ ଯେଉଁମାନେକି ବହୁତ କ୍ଷତିଗ୍ରସ୍ତ ହୋଇଥିଲେ....ମମତାଜ ଗୋଟିଏ ଆଠବର୍ଷର ଝିଅକୁ ଘରକୁ ଆଣିଲା, ତା'ର ଏକ ଦୂର ସମ୍ପର୍କୀୟା ମାଉସୀ ଝିଅ, ଯିଏ ତାଙ୍କ ଘର ଛାତ ଖସି ପଡ଼ିବାରୁ ବାପ, ମା' ଉଭୟଙ୍କୁ ହରାଇଥିଲା।

"ସେ ଏକୁଟିଆ କେମିତି ରହିବ ?" ଜେଜେମା' ପଚାରିଲେ।

"ମୁଁ ଦେଖାଶୁଣା କରିବି," ମମତାଜ କହିଲା, "ମୁଁ ଆଉ ଏକ ଝିଅ ଚାହୁଁଥିଲି।"

"ଏହା ତୁମକୁ ସୁବିଧା ହେବନାହିଁ," ଜେଜେମା' କହିଲେ, "ତୁମେ ଆମକୁ କିଛି କରିବାକୁ ଦିଅ।"

"ସବୁ ଭଗବାନଙ୍କର ଇଚ୍ଛା," ମମତାଜ କହିଲା, "ସେ ଆମକୁ ରକ୍ଷା କରିଛନ୍ତି- ଆମ୍ଭମାନଙ୍କୁ ମଧ୍ୟ ସେମାନଙ୍କର ଯତ୍ନ ନେବା ଦରକାର ଯେଉଁମାନେ ଏତେ ଭାଗ୍ୟବାନ ନୁହଁନ୍ତି।"

ଯେତେବେଳେ ଭୂମିକମ୍ପରୁ ବଞ୍ଚିଯାଇଥିବା ଅନେକ ଲୋକ ସହର ଛାଡ଼ିବାକୁ ଲାଗିଲେ, ଢେଢେବାପା ଓ ତାଙ୍କ ପରିବାର ସେମାନଙ୍କ ଆସବାବପତ୍ର ସବୁ ଏକାଠି କରିବାକୁ ଲାଗିଲେ। ସେମାନେ ଇଟାପଥରର କୁଢ଼କୁ ସଫାକଲେ ଓ କ୍ଷତିଗ୍ରସ୍ତ ଜିନିଷରୁ ଦେଖିଲେ

କ'ଣ କାମରେ ଆସିପାରିବ ଏବଂ ତା'ପରେ ସେମାନେ ବାଛିବାକୁ ଲାଗିଲେ; କିନ୍ତୁ ଜେଜେବାପା କେବଳ ସାନ ସାନ ଇଟା ଓ ହାଲକା କାଠ ଫ୍ରେମ୍‌କୁ ଏକାଠିକରି କାମରେ ଲଗାଇବା ପାଇଁ ଠିକ୍ କଲେ "ତେବେ ଯଦି ପୁଣି ଥରେ ଭୂମିକମ୍ପ ହୁଏ," ଜେଜେବାପା କହିଲେ, "ଆମ ଘର ମମତାଜ୍‌ର କୁଡ଼ିଆ ପରି ହଲିବ ଓ ନଇଁଯିବ, ଭାଙ୍ଗି ଖସିପଡ଼ିବା ପରିବର୍ତ୍ତେ।"

"ମୁଁ ଭାବୁଛି ବିପତ୍ତିରୁ ମଧ୍ୟ ବହୁତ କିଛି ଶିଖିବାର ଅଛି।" ଜେଜେମା' କହିଲେ।

ଜଣେ ପଡ଼ୋଶୀ ଭଙ୍ଗା କାନ୍ଥ ଉପରେ ଆଖି ବୁଲାଇନେଲା ଓ ପଚାରିଲା, "ଆପଣମାନେ ସବୁ ଯାଉନାହାନ୍ତି କି?"

"ନା," ଜେଜେବାପା କହିଲେ। "ଆମେ ରହୁଛୁ।"

"ବିଶେଷଜ୍ଞମାନେ କହୁଛନ୍ତି ଯେ, ପୁଣିଥରେ ନିଶ୍ଚିତ ରୂପେ ଭୂମିକମ୍ପ ହେବ।"

"କିଏ ଜାଣେ?" ଜେଜେବାପା କହିଲେ।

"ଆପଣ ବିଶେଷଜ୍ଞଙ୍କ କଥାକୁ ବିଶ୍ୱାସ କରୁନାହାନ୍ତି?"

"ସେମାନେ ଏଇ ଭୂମିକମ୍ପର କଥା କହିପାରିଥିଲେ କି?"

"ନା, ସେମାନେ କହିପାରି ନଥିଲେ," ପଡ଼ୋଶୀ ମାନିଲା।

"ତେବେ କାହିଁକି ପଳାଇଯିବା? ଆପଣ କେଉଁଠିକୁ ଯାଉଛନ୍ତି?"

"କଟକ।"

"ବିଶେଷଜ୍ଞମାନେ ଜାଣି ପାରିଛନ୍ତି ଯେ, କଟକରେ ଝଡ଼ ତୋଫାନ ହେବ।"

ପଡ଼ୋଶୀ ତା'ର ଥରଥର କମ୍ପୁଥିବା ହାତ ତଳକୁ ଝୁଲାଇ ଚିନ୍ତାଗ୍ରସ୍ତ ମୁଦ୍ରାରେ ଚାଲିଗଲା; ହୁଏତ କଟକ ବି ଏକ ଭଲ ପ୍ରସ୍ତାବ ନଥିଲା। ବିପତ୍ତିରୁ ରକ୍ଷା ପାଇବା ପାଇଁ କେଉଁଠିକୁ ଜଣେ ଯିବ?

ଜେଜେବାପା ଓ ତାଙ୍କ ପରିବାର ଠିକ୍‌କଲେ ଯେ, ସେମାନେ

ସେଇଠି ହିଁ ରହିବେ; ଯେଉଁଠି ସର୍ବଦା ରହି ଆସିଛନ୍ତି ଓ ବିପଦକୁ ସାମ୍ନା କରି ଆସିଛନ୍ତି। ଆଉ ଏକ ଭୂମିକମ୍ପ ମଧ୍ୟ ହୋଇପାରେ। କିନ୍ତୁ ସେମାନେ ଏବେ ସତର୍କ ହୋଇଛନ୍ତି। ଏବଂ ଏଇସବୁ ଭିତରେ, ଟିକିଏ ଶାନ୍ତି ମିଳିଥିଲା। ମୁକେଶ ଓ ଡ଼ଲି ତାଙ୍କର କେତେଗୁଡ଼ିଏ ଖେଳଣା ଓ କଣ୍ଢେଇ ପାଇଥିଲେ, ରୂପ ବଦଳି ଯାଇଥିଲା, କିନ୍ତୁ ଚିହ୍ନି ହେଉଥିଲା, ଜେଜେମା'ଙ୍କର ଓଭନ୍‌ଟି ଇଟା ପଥରର କୁଢ଼ ଉପରୁ ଅକ୍ଷତ ଅବସ୍ଥାରେ ବାହାର କରାଗଲା ଓ ବିସ୍କୁଟ୍ ତିଆରି ହୋଇପାରିଲା ଏବଂ ଜେଜେବାପା ତାଙ୍କର ଚେପା ହୋଇଯାଉଥିବା ଗାଧୁଆ ଟିଣ ଟବ୍ ପାଇଲେ ଓ ହାତୁଡ଼ିରେ ପିଟି ତାକୁ ସିଧା କରିଦେଲେ।

ସେ ଟିଣ ଟବ୍‌ଟିକୁ ଆମ୍ବଗଛ ତଳେ ରଖିଲେ, ତା' ଦେହରେ ଗରମ ପାଣି ଭର୍ତ୍ତି କଲେ ଓ ଅପରାହ୍ନର ସୂର୍ଯ୍ୟାଲୋକରେ ଗାଧୋଇଲେ। ଗୋଟାଏ ବି ସାବୁନ୍ ନଥିଲା। କିନ୍ତୁ ବଗିଚାରେ ଗୁଡ଼ାଏ ପୁଦିନା ଗଛ ଥିଲା। ସେ ଖୁବ୍ ଉଚ୍ଚ ସ୍ୱରରେ ଗାଇବାକୁ ଲାଗିଲେ, ଏବଂ ଯେଉଁ ଚଢ଼େଇମାନେ ଜଙ୍ଗଲକୁ ଫେରିବାକୁ ଲାଗିଥିଲେ, ଏଇ ଶବ୍ଦରେ ଟିକେ ଅଟକି ଗଲେ ଓ ପୁଣି ଉଡ଼ିଗଲେ।

# 1

ରୋମି ତା' ସାଇକେଲ୍‌ରେ ଚଢ଼ିଲା ବେଳକୁ ଲକ୍ଷ୍ୟକଲା ଯେ, ଦୂରରେ ଥିବା ଗଛଗୁଡ଼ିକ ଫାଙ୍କରୁ ଧୂଆଁ ଉଠୁଛି।

"ବଣରେ ନିଆଁ ଲାଗିଲା ପରି ଜଣାଯାଉଛି," ତା'ର ସାଙ୍ଗ ଓ ସହପାଠୀ ପ୍ରେମ୍ କହିଲା। "ଏହା ପୂର୍ବ ପାଖରେ ଲାଗିଛି," ରୋମି କହିଲା, "ରାସ୍ତା ପାଖରେ କେଉଁଠି ବି ନାହିଁ।"

"ବହୁତ ଜୋର୍‌ରେ ସେଠି ପବନ ବୋହୁଛି," ରାସ୍ତା ଉପରେ ଶୁଖିଲା ପତ୍ର ଖସୁଥିବାର ଦେଖି ପ୍ରେମ୍ କହିଲା।

ଏହା ମଇ ମାସର ମଝାମଝି ଥିଲା, ଏବଂ ଅନେକ ସପ୍ତାହ ଧରି ବର୍ଷା ହୋଇନଥିଲା। ଘାସସବୁ ଧୂସର ହୋଇଯାଇଥିଲା, ଗଛର ପତ୍ରସବୁ ଧୂଳିରେ ଭର୍ତ୍ତି ହୋଇଯାଇଥିଲା। ଯଦିଓ ଏବେ ସଞ୍ଜ ଛଅଟା ହେବାକୁ ଯାଉଥିଲା, ପିଲାମାନଙ୍କର ଜାମା ଗୁଡ଼ିକ ଝାଳରେ ବୁଡ଼ିଯାଇଥିଲା।

"ଖୁବ୍ ଶୀଘ୍ର ଅନ୍ଧାର ହୋଇଯିବ," ପ୍ରେମ୍ କହିଲା, "ଆଜି ରାତିରେ ତୁ ଆମ ଘରେ ରହିଗଲେ ଭଲ ହୁଅନ୍ତା।"

"ନା, ମୋତେ କୁହାଯାଇଥିଲା ଯେ ଆଜି ରାତିରେ ଘରେ ରହିବାକୁ ପଡ଼ିବ। ମୋ' ବାପାଙ୍କର ଦେହ ଭଲନାହିଁ। ଡାକ୍ତର ତାଙ୍କପାଇଁ ମୋତେ କିଛି ବଟିକା ଦେଇଛନ୍ତି।"

"ତା'ହେଲେ ତୁ ଶୀଘ୍ର ଚାଲି ଯାଇଥାନ୍ତୁ। ଜଣାପଡୁଛି ନିଆଁ ଖେଳି ଗଲାଣି।"

"ଓଃ! ଏହା ବହୁତ ଦୂରରେ ଅଛି। ସାଇକେଲ୍‌ରେ ଜଙ୍ଗଲ

ପାର କରିବାକୁ ମୋତେ କେବଳ ଚାଳିଶ ମିନିଟ୍ ଲାଗିବ । ଆଚ୍ଛା ପ୍ରେମ୍-କାଲି ଦେଖା ହେବ ।''

ରୋମି ସାଇକେଲ୍ ଚଢ଼ିଲା ଓ ଖୁବ୍ ଜୋର୍‌ରେ ପ୍ୟାଡ଼େଲ୍ ମାରି ଗାଁର ମୁଖ୍ୟ ରାସ୍ତାରେ ବୁଲୁଥିବା କୁକୁଡ଼ା, ବୁଲା କୁକୁର



ଓ ଯିବା ଆସିବା କରୁଥିବା ଲୋକ ମାନଙ୍କୁ ଇତସ୍ତିତ କରିପକାଇଲା ।

"ହେ ! ତୁ କେଉଁଆଡେ ଯାଉଛୁ !" ସାଇକେଲ୍ ମାଡ଼ି ଆସୁଥିବା ବାଟରୁ ହଟିଯାଇ, ଗାଁର ଜଣେ ଲୋକ ରାଗରେ କହିଲା ।

"ତୁ କ'ଣ ରାସ୍ତାଟା କିଣି ନେଇଛୁ ବୋଲି ଭାବୁଛୁ କି ?"

"ଅବଶ୍ୟ ମୁଁ କିଣି ନେଇଛି," ରୋମି ମଜାରେ କହିଲା ଓ ସାଇକେଲ୍‌ରେ ତା'କୁ ଡେଇଁଗଲା ।

ତାଙ୍କ ନିଜ ଗାଁ ଏଠୁ ପ୍ରାୟ ସାତ ମାଇଲ ଦୂର, ବଣ ସେପାଖରେ; କିନ୍ତୁ ତାଙ୍କ ଗାଁରେ କେବଳ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଥିଲା ଓ ରୋମି ଏବେ ଉଚ୍ଚ ବିଦ୍ୟାଳୟରେ ପଢୁଥିଲା । ତା'ବାପା, ଯିଏକି ଜଣେ ସ୍ୱଚ୍ଛଳ ଧନୀ ଆଖୁଚାଷୀ ଥିଲେ, ଏଇ ଅଳ୍ପ ଦିନ ହେଲା ତାକୁ ସାଇକେଲଟିଏ ଆଣି ଦେଇଥିଲେ । ରୋମି ସ୍କୁଲଯିବା ପାଇଁ ଏତେ ଆଗ୍ରହୀ ନଥିଲା ଓ ଭାବୁଥିଲା ବେଶୀ ଛୁଟି ନାହିଁ; କିନ୍ତୁ ସେ ବହୁତ ଦୂରକୁ ସାଇକେଲରେ ଯିବାପାଇଁ ଭଲ ପାଉଥିଲା, ଏବଂ ତା' ସହପାଠୀମାନଙ୍କ ସହ ତା'ର ଭଲ ସମ୍ପର୍କ ଥିଲା ।

ସେ ପ୍ରେମ୍ ସାଥିରେ ଆଜି ରାତିରେ ରହି ପାରିଥା'ନ୍ତା, ଏହା କେବଳ ବୈଦ୍ୟ-ଗାଉଁଲି ଡାକ୍ତର ତା' ବାପାଙ୍କ ପାଇଁ ଦେଇଥିବା ବଟିକା ଯୋଗୁଁ ହୋଇପାରିଲା ନାହିଁ । ରୋମି ବାପାଙ୍କ ପିଠିରେ ଯନ୍ତ୍ରଣା ହେଉଥିଲା ଓ ବଟିକା ଗୁଡ଼ିକ ବିଶେଷ କରି ଦେଶୀ ଜଡ଼ିବୁଟିରୁ ତିଆରି କରାଯାଇଥିଲା । ତାକୁ ଏକ ସୁନ୍ଦର ସାଇକେଲ୍ ଦିଆଯାଇଥିବାରୁ, ସେ ଭାବିଲା, ଫେରିଲା ବେଳକୁ କମ୍‌ସେକମ୍ ଏହା କରିପାରିବ ଯେ, ଯେତେ ଶୀଘ୍ର ସମ୍ଭବ ତା' ବାପାଙ୍କୁ ବଟିକା ଆଣିଦେବ ।

ସେ ତା' ମଥା ତଳକୁ ନୁଆଇଁ ସାଇକେଲ୍‌ରେ ଖୁବ୍‌ଜୋରରେ ଗାଁ ପାରି ହେବାକୁ ଲାଗିଲା । ତା'ସାମନାରେ ଜଳନ୍ତା ବଣରୁ ଧୂଆଁ ଉପରକୁ ଉଠୁଥିଲା ଓ ଆକାଶ ଲାଲ୍ ହୋଇଯାଇଥିଲା ।

# 2

ସେ ଖୁବ୍ ଚଞ୍ଚଳ ଗାଁକୁ ପଛରେ ଛାଡ଼ି ଚାଲି ଆସିଥିଲା । ଏବେ ଟିକେ ଉଠାଣି ଥିଲା ଓ ରୋମି ଉଠିଯିବା ପାଇଁ ଟିକେ ଜୋର୍‌ରେ ଦବେଇକରି ପ୍ୟାଡେଲ ମାରିଲା । ଥରେ ଉପରେ ପହଞ୍ଚିଲେ, ରାସ୍ତା ବଣର ଧାରେ-ଧାରେ ତଳକୁ ମୋଡ଼ି ଯାଇଥିଲା ।

ଏହି ସମୟରେ ରୋମି ବଡ଼ ଆନନ୍ଦିତ ହେଉଥିଲା । ସେ ଅଶ୍ୱସ୍ତି ଅନୁଭବ କଲା, ପ୍ୟାଡ଼େଲ୍ ମାରିବା ବନ୍ଦ କରିଦେଲା ଏବଂ ସାଇକେଲକୁ ଗଡାଣିରେ ଗଡିବାକୁ ଦେଲା । ଖୁବ୍ ଶୀଘ୍ର ପବନ ତା' ଆଡ଼କୁ ବୋହିବାକୁ ଲାଗିଲା, ମୁଣ୍ଡ ବାଳକୁ ତା' ମୁହଁ ଉପରେ ଅଲରା କରି ପକାଇଲା ଓ ତା' ଜାମାକୁ ପଛଆଡ଼କୁ ଉଡ଼େଇବାକୁ ଲାଗିଲା । ସେ ଖୁବ୍ ଜୋରରେ ଗୀତ ଗାଇବାକୁ ଲାଗିଲା ।

ଗାଁ ଆଡୁ ଗୋଟିଏ କୁକୁର ଭୟଙ୍କର ରଡ଼ିଛାଡ଼ି ତା'କଡ଼ରେ ଦୌଡ଼ିଲା । ରୋମି ମଧ୍ୟ କୁକୁରକୁ ଦେଖି ପାଟିକଲା, ତାକୁ ଦୌଡିବାକୁ ଉତ୍ସାହିତ କଲା ।

ତା'ପରେ ରାସ୍ତା ସିଧା ଥିଲା ଓ ରୋମି ପୁଣି ପ୍ୟାଡ଼େଲ୍ ମାରିବାକୁ ଲାଗିଲା ।

କୁକୁର ସାମ୍ନା ଜଙ୍ଗଲ ଆଡ଼କୁ ଅନାଇ, ପଛକୁ ଗାଁ ଆଡ଼କୁ ଫେରିଲା । ସେ ଜଙ୍ଗଲକୁ ଦେଖି ଡରିଗଲା ।

ଏ ଧୂଆଁ ଅଧିକ ଘନ ହୋଇଗଲା ଓ ରୋମି ଜଳିଯାଉଥିବା କାଠ ବାସ୍ନାକୁ ଶୁଙ୍ଘିବାକୁ ପାଇଲା । କିନ୍ତୁ ତା' ସାମ୍ନା ରାସ୍ତା ସଫା ଥିଲା । ସେ ରାସ୍ତା ଅତିକ୍ରମ କଲା ।

ଏହା ବଡ଼ ଖରାପ ଧୂଳିଆ ରାସ୍ତା ଥିଲା। ସିଧା ବଣ ଭିତର ଦେଇ ଯାଇଥିଲା। ଲମ୍ୱା ଗଛସବୁ ଦୁଇ କଡ଼ରେ ଥାଇ, ସୂର୍ଯ୍ୟର ଅନ୍ତିମ ଆଭାକୁ ଅଟକାଇ ଦେଉଥିଲେ। କିନ୍ତୁ ନିଆଁର ବିଚ୍ଛୁରିତ କିରଣରେ, ରାସ୍ତା ଖୁବ୍ ଆଲୋକିତ ହୋଇଥିଲା ଓ ବଡ଼ ଗଛର ଛାଇ, ସାଇକେଲରେ ଯାଉଥିବା ପିଲାଟି ଆଗରେ ନାଚି ଯାଉଥିଲା।

ସାଧାରଣତଃ ରାସ୍ତା ବଡ଼ ନିଛାଟିଆ ଥାଏ। ଏହି ସଞ୍ଜରେ ବଣ ନିଆଁଦାଉରେ ବାହାରି ଆସିଥିବା ବଣୁଆ ଜୀବଜନ୍ତୁଙ୍କ ଦ୍ୱାରା ଏହା ସଜୀବ ହୋଇ ଉଠିଥିଲା।

ରୋମି ପ୍ରଥମେ ଯେଉଁ ପ୍ରାଣୀକୁ ଦେଖିଲା ତାହା ଏକ



ଠେକୁଆ ଥିଲା, ତା' ସାମ୍ନାରେ ଡେଇଁଡେଇଁ ରାସ୍ତା ପାରି ହୋଇଗଲା। ତାକୁ ଆହୁରି ଅନେକ ଠେକୁଆ ଅନୁସରଣ କରୁଥିଲେ। ତା'ପରେ ପଲେ ମାଙ୍ଗଡ଼ ଉତ୍ତେଜିତ ଭାବେ ହାଉଁ ହାଉଁ ହୋଇ ଛୁଟିଗଲେ। ରାସ୍ତା ସେପାଖରେ ସେମାନେ ନିରାପଦରେ ରହି ପାରିବେ ରୋମି ଭାବିଲା, ନିଆଁ ରାସ୍ତା ଟପିପାରିବ ନାହିଁ।

କିନ୍ତୁ ଏହା ପାଖେଇ ଆସୁଥିଲା। ଏବଂ ରୋମି ଏହା ଅନୁଭବ କରି ଦବେଇକରି ପ୍ୟାଡ଼େଲ୍ ମାରିଲା। ଅଧଘଣ୍ଟାଏ ଭିତରେ ବଣ ପାରି ହୋଇଯିବା ଦରକାର।

ହଠାତ୍, ରାସ୍ତା କଡ଼ରୁ ହୁସ୍ ହୁସ୍ କରି ଗୁଡ଼ିଏ ଚିଲ ଉଡ଼ିବାକୁ ଲାଗିଲେ, ତଳେ ରାସ୍ତା ଉପରେ ମଧ୍ୟ ଉଡ଼ିବାକୁ ଲାଗିଲେ, ଏକଦମ୍ ଚଳନ୍ତି ସାଇକେଲ୍ ଆଗରେ। ଚମକି ଯାଇ ରୋମି ତଳେ ପଡ଼ିଗଲା। ଯେତେବେଳେ ଉଠିଲା ଓ ପୋଷାକ ଝାଡ଼ିବାକୁ ଲାଗିଲା, ଦେଖିଲା ଯେ ଜଙ୍ଘରୁ ରକ୍ତ ବୋହୁଛି। ବହୁତ ବଡ଼ ଖଣ୍ଡିଆ ହୋଇନଥିଲା, କିନ୍ତୁ ସେ ରୁମାଲ ବାହାରକରି ତା' ଜଙ୍ଘରେ ପଟି ବାନ୍ଧିଲା। ଭିତରେ ସାମାନ୍ୟ କିଛି ରକ୍ତ ବୋହିଗଲା। ତା'ପରେ ପୁଣି ସେ ସାଇକେଲ ଚଢ଼ିଲା।

ସେ ଏବେ ସାଇକେଲ ସାମାନ୍ୟ ଧୀରେ ଚଳାଇଲା, କାରଣ ପଶୁପକ୍ଷୀମାନେ କଣ୍ଟାବୁଦା ଭିତରୁ ବାହାରି ଆସୁଥିଲେ।

କେବଳ ଚିଲ ନୁହନ୍ତି, ବରଂ ଛୋଟଛୋଟ ଚଢ଼େଇ ମଧ୍ୟ ରାସ୍ତା ଦେଇ ଉଡ଼ିବାକୁ ଲାଗିଲେ- ଶୁଆ, ଜଙ୍ଗଲୀ କାଉ, ପେଚା, କାଠହଣା ଚଢ଼େଇ ଏବଂ ପବନ ତାଙ୍କ ଚିତ୍କାରରେ ଉଡିଗଲା।

ସମସ୍ତେ ପଳାଇବାରେ ଲାଗିଛନ୍ତି, ରୋମି ଭାବିଲା, ଏହା ନିଶ୍ଚିତରୂପେ ଏକ ବଡ଼ ଅଗ୍ନିକାଣ୍ଡ।

ସେ ଏବେ ତା'ର ଡାହାଣ ପାଖ ଗଛଗୁଡ଼ିକ ପାଖରୁ ନିଆଁ ଆସୁଥିବାର ଦେଖିପାରୁଥିଲା ଓ ଚଡ଼ଚଡ଼ ହୋଇ ଜଳି ଯାଉଥିବା ଶୁଖିଲା ପତ୍ରର ଶବ୍ଦ ମଧ୍ୟ ଶୁଣିପାରୁଥିଲା। ତା' ମୁହଁରେ ଗରମ

ପବନ ବାଜୁଥିଲା । ପତ୍ରସବୁ ଏପର୍ଯ୍ୟନ୍ତ ଢଳୁଥିଲା କିମ୍ବା ତଳେ ବିଛେଇ ହୋଇଥିବା ପତ୍ର ସବୁ ମଣ୍ଡଳାକାର ହୋଇ ଉପରକୁ ଉଠି ଯାଉଥିଲା ।

ଦଳେ ହରିଣ ରାସ୍ତା ଡେଇଁ ଗଲେ ଓ ରୋମିକୁ ସେମାନେ ରାସ୍ତା ପାରହେବା ପର୍ଯ୍ୟନ୍ତ ଅଟକିବାକୁ ପଡ଼ିଲା । ତା'ପରେ ସେ ସାଇକେଲ୍ ଚଢ଼ିଲା ଓ ଆଗେଇବାକୁ ଲାଗିଲା, କିନ୍ତୁ ବର୍ତ୍ତମାନ, ପ୍ରଥମ ଥର ପାଇଁ ସେ ଭୟଭୀତ ହୋଇପଡ଼ିଲା ।



## 3

ସାମ୍ନାରୁ ଗୋଟାଏ ଶଙ୍କାକୁଳ ଠନ୍-ଠନ୍ ଶବ୍ଦ ଆସିଲା। ଏହା କୌଣସି ଜୀବଜନ୍ତୁର ଶବ୍ଦ ନୁହେଁ, ରୋମି ସେ ବିଷୟରେ ନିଶ୍ଚିତ ଥିଲା! ଦମକଳ କି? ପଚାଶ ମାଇଲ ଧରି ଯେ କୌଣସି ଦମକଳ ନଥିଲା।

ଠନ୍-ଠନ୍ ଶବ୍ଦ ପାଖେଇ ଆସିଲା, ଏବଂ ରୋମି ଖୋଜି ଦେଖିଲା ଯେ, ସେଇ ଶବ୍ଦ ଜଙ୍ଗଲି ରାସ୍ତା ଦେଇ ଦୌଡୁଥିବା ଗୋଟିଏ ଛୋଟ ପିଲାଠାରୁ ଆସୁଥିଲା, ଦୁଇଟି ଦୁଧ ଡ୍ରମ ତା' ଦୁଇ ପାଖେ ଠନ୍-ଠନ୍ ହୋଇ ବାଜୁଥିଲା।

''ତେଜୁ!'' ପାଖ ଗାଁର ସେ ପିଲାକୁ ଚିହ୍ନି ରୋମି ଡାକିଲା, ''ଏଠି କ'ଣ କରୁଛୁ କିରେ?''

''ଘରେ ପହଞ୍ଚିବା ପାଇଁ ଚେଷ୍ଟା କରୁଛି।'' ସାଇକେଲ ସାଙ୍ଗରେ ଦୌଡୁଦୌଡୁ ତେଜୁ କହିଲା।

''ବସିପଡ଼,'' ରୋମି ତା'ପାଇଁ ସାଇକେଲ ଅଟକାଇ କହିଲା।

ତେଜୁ କେବଳ ଆଠ କି ନ' ବର୍ଷର ପିଲା। ରୋମି ଠାରୁ ଦୁଇଚାରି ବର୍ଷ ଛୋଟ। ରାସ୍ତାରେ କାମ କରୁଥିବା ଶ୍ରମିକ ମାନଙ୍କ ପାଇଁ ତାକୁ ଦୁଧ ଯୋଗାଇ ଦେବାକୁ ପଡୁଥିଲା, କିନ୍ତୁ ଶ୍ରମିକମାନେ ନିଆଁର ପହିଲି ଝଲକ ଦେଖି ପଳାଇଥିଲେ ଓ ତେଜୁ ଦୁଧଭର୍ତ୍ତି ଡ୍ରମଗୁଡ଼ା ଧରି ଜଲ୍‌ଦି-ଜଲ୍‌ଦି ଘରକୁ ଫେରୁଥିଲା।

ସେ ସାଇକେଲ୍‌ର ସାମ୍ନା ରଡ୍‌ରେ ବସିପଡ଼ିଲା ଓ ରୋମି ପୁଣି ସାଇକେଲ ଚଲାଇବାକୁ ଲାଗିଲା। ସେ ସାମ୍ନା ରଡ୍‌ରେ



ତା' ସାଙ୍ଗମାନଙ୍କୁ ବସେଇବାରେ ଅଭ୍ୟସ୍ତ ଥିଲା ।

''ତୁ ତୋ'ର ଦୁଧ ଡ୍ରମଗୁଡ଼ାକୁ ବଜା,'' ରୋମି କହିଲା । ସେଇଭଳି କଲେ, ଜୀବଜନ୍ତୁମାନେ ଆମେ ଆସୁଛନ୍ତି ବୋଲି ଜାଣିବେ । ମୋ' ଘଣ୍ଟି ବେଶି ଜୋର୍‌ରେ ବାଜୁନାହିଁ । ମୁଁ ମୋ ସାଇକେଲ୍‌ରେ ଏକ ହର୍ଣ୍ଣ ଲଗାଇବି ।''

''ଜଙ୍ଗଲ ଭିତରେ ଏତେ ଜୀବଜନ୍ତୁ ଥାଆନ୍ତି ବୋଲି ମୁଁ ଜାଣିନଥିଲି,'' ତେଜୁ କହିଲା । ''ମୁଁ ରାସ୍ତା ମଝିରେ ଗୋଟାଏ ଅଜଗର ସାପ ଦେଖିଲି । ସେ ଡାହାଣ ଆଡ଼କୁ ଯାଉଥିଲା ।''

''ତୁ କ'ଣ କଲୁ ?''

''ମୁଁ ଡିଆଁ ମାରି ଚାଲି ଆସିଲି !''

ଡେଲୁ ଅଯଥାରେ ବକ୍‌ବକ୍ କରୁଥିଲା, କିନ୍ତୁ ରୋମିର ମନ ଯାଇ ନିଆଁ ପାଖରେ ଥିଲା, ନିଆଁ ଶୁଖିଲା ଘାସରୁ ଉପରକୁ ଉଠୁଥିଲା ଏବଂ ଗଛର ଗଣ୍ଡି ଓ ଡାଳ ପର୍ଯ୍ୟନ୍ତ ମାଡ଼ି ଯାଉଥିଲା । ଜଙ୍ଗଲସାରା ଧୂଆଁ ଘୋଟି ଯାଇଥିଲା ।

ରୋମିର ଆଖି ପୋଡୁଥିଲା ଏବଂ ମଥା ବାଳ ଓ ଆଖିପତା ଶୁଖିଯାଉଥିଲା । ସେ କ୍ଲାନ୍ତି ଅନୁଭବ କରୁଥିଲା, କିନ୍ତୁ ସେ ବର୍ତ୍ତମାନ ଅଟକି ପାରିଲା ନାହିଁ, ତାକୁ ନିଆଁର ସୀମାକୁ ପାରି ହୋଇଯିବାର ଥିଲା । ସମାନ ଗତିରେ ପନ୍ଦର କିମ୍ବା କୋଡ଼ିଏ ମିନିଟ୍ ସାଇକେଲ ଚଳାଇଲେ ଯାଇ ସେମାନେ ଛୋଟ କାଠପୋଲଟି ପାଖରେ ପହଞ୍ଚିବେ, ଯେଉଁଟା ବଣଠାରୁ ଆଖୁକ୍ଷେତକୁ ଅଲଗା କରୁଥିଲା ।

ଥରେ ନଦୀ ପାରି ହୋଇଗଲେ ସେମାନେ ସୁରକ୍ଷିତ ହୋଇ ପାରିବେ । ନିଆଁ ତାଙ୍କୁ ଆରପାଖରେ ଛୁଇଁପାରିବ ନାହିଁ, କାରଣ ନଦୀ ଧାରରେ ବଣ ଶେଷ ହୋଇଯାଇଥିଲା । କିନ୍ତୁ ସେମାନେ ଯଥାସମୟରେ ନଦୀ ପାଖରେ ପହଞ୍ଚି ପାରିବେତ ?



# 4

ଠନ୍-ଠନ୍-ଠନ୍-ଠନ୍ ଶବ୍ଦ କରି ତେଜୁର ଦୁଧ ଡ଼ବା ଗୁଡ଼ିକ ବାଜୁଥିଲା। କିନ୍ତୁ ନିଆଁର ଶବ୍ଦ ମଧ୍ୟ ବଢ଼ିଥିଲା।

ଗୋଟିଏ ଲମ୍ବା ଶିମିଳି ଗଛର ରାସ୍ତା ସେପାଖକୁ ନଇଁ ଯାଇଥିବା ଡାଳରେ ନିଆଁ ଲାଗି ଯାଇଥିଲା। ସେମାନେ ଏହାରି ତଳେ ଥିଲେ ଯେତେବେଳେ ଏକ ପ୍ରଚଣ୍ଡ ଶବ୍ଦ ହେଲା ଓ ଗୋଟିଏ ଜଳନ୍ତା ଡାଳ କେଇହାତ ଦୂରରେ ତାଙ୍କ ସାମ୍ନାରେ ତଳେ ପଡ଼ିଲା।

ପିଲାମାନଙ୍କୁ ସାଇକେଲ୍‌ରୁ ଓହ୍ଲାଇବାକୁ ପଡ଼ିଲା। ରାସ୍ତାର ବାଆଁକଡ଼କୁ ଆସି କଣ୍ଟାଳିଆ ବୁଦା ଭିତରଦେଇ ଗଲେ, ସାଇକେଲକୁ ଠେଲି-ପେଲି ଆଣିଲେ ଓ ଜଳୁଥିବା ଗଛକୁ ପାରକରି କିଛି ଦୂରରେ ସେମାନେ ରାସ୍ତାକୁ ଆସିଲେ।

"ଆମେ ଠିକ୍ ସମୟରେ ବାହାରି ପାରିବା ନାହିଁ," ସାଇକେଲ ଉପରେ ବସିପଡ଼ି ନିରୁତ୍ସାହ ହୋଇ ତେଜୁ କହିଲା।

"ହଁ, ଆମେ ବାହାରି ପାରିବା," ବଳପୂର୍ବକ ପ୍ୟାଡ଼େଲ୍‌ମାରି ରୋମି କହିଲା। "ବର୍ତ୍ତମାନ ପର୍ଯ୍ୟନ୍ତ ନିଆଁ ରାସ୍ତା ଟପିନାହିଁ।"

ଏତିକି ସେ କହିଛି କି ନାହିଁ, ବାଆଁ ପାଖରେ ଘାସଭିତରୁ ଅଳ୍ପ-ଅଳ୍ପ ନିଆଁ ଉଠୁଥିବାର ସେ ଦେଖିଲା। ପୁଣି ନିମିଷକେ ନିଆଁଝୁଲ ଓ ଜଳନ୍ତା ପତ୍ରସବୁ ରାସ୍ତା ଉପର ଦେଇ ଉଡିଲା, ସେପାଖର ଘାସକୁ ଜଳେଇବା ପାଇଁ।

"ହେ, ଦେଖ!" ହଠାତ୍ ସାଇକେଲ୍ ଅଟକାଇ ରୋମି ଚିତ୍କାର କଲା"।

''ଏବେ କ'ଣ ଅସୁବିଧା ହେଲା ?'' କଷ୍ଟହେଉଥିବା ଆଖିକୁ ଦଳୁଦଳୁ ତେଜୁ ପଚାରିଲା । ଏବଂ ତା'ପରେ, ଧୂଆଁ ଭିତରେ, ସେ ଦେଖିଲା କ'ଣ ତାଙ୍କୁ ଅଟକାଇଛି ।

ଗୋଟାଏ ହାତୀ ରାସ୍ତା ମଝିରେ ଠିଆ ହୋଇଥିଲା ।

ତେଜୁ ସାଇକେଲ୍ ଉପରୁ ଖସି ପଡ଼ିଲା, ତା'ର ଦୁଧ ଡ୍ରମ ଗୁଡ଼ିକ ପଡ଼ିଆରେ ଗଡ଼ିଯାଇ ଖୋଲିଗଲା ଓ ଦୁଧ ସବୁ ବୋହିଗଲା ।

ହାତୀଟି ଚାଳିଶ ପାହୁଣ୍ଡ ଦୂରରେ ଥିଲା । ସେ ଇତସ୍ତତ ଭାବରେ ଘୂରୁଥିଲା, ତା'ର ବଡ଼ବଡ କାନଗୁଡ଼ିକ, ମଥା ଏପଟ ସେପଟ କରୁଥିବା ଯୋଗୁଁ ଫଡ଼ଫଡ଼ ହେଉଥିଲା । ସେ ଭାବୁଥିଲା କେଉଁଆଡ଼କୁ ଯିବ ।

ବାଆଁ ଆଡ଼କୁ ଦୂରରେ ଯେଉଁଠି ଜଙ୍ଗଲ ଏପର୍ଯ୍ୟନ୍ତ ବି ସୁରକ୍ଷିତ ଥିଲା, ଦଳେ ହାତୀ ନଦୀଆଡ଼କୁ ଗଲେ । ଦଳର ମୁଖିଆ ତା'ର ଶୁଣ୍ଢକୁ ଉପରକୁ ଉଠାଇଲା ଓ ଗୋଟିଏ ହୁଁକାର ଛାଡ଼ିଲା । ରାସ୍ତାରେ ଥିବା ହାତୀଟି ଏହା ଶୁଣି ନିଜ ଶୁଣ୍ଢ ଉପରକୁ ଉଠାଇଲା ଓ ହଲି ହଲି ଦଳ ପାଖକୁ, ଜଙ୍ଗଲ ଭିତରେ ଚାଲିଗଲା ।

''ଆ'ତେଜୁ, ବସିଯା !'' ରୋମି ଜୋରରେ କହିଲା, ''ଆମେ ଏଠାରେ ବେଶୀ ଡ଼େରି ପର୍ଯ୍ୟନ୍ତ ରହିପାରିବା ନାହିଁ ।''



# 5

ତେଜୁ ତା' ଦୁଧ ଦ୍ରମଗୁଡ଼ିକ କଥା ଭୁଲିଗଲା ଓ ଡେଇଁ ପଡ଼ି ସାଇକେଲ ରଡ଼ରେ ବସିପଡ଼ିଲା। ଖୁବ୍ ଶୀଘ୍ର ଓ ଚଞ୍ଚଳ ଯିବାପାଇଁ ରୋମି ସାଇକେଲ୍‌ରେ ଆଗକୁ ମାଡ଼ିଚାଲିଲା। ସେ ଯଥାସମ୍ଭବ ରାସ୍ତାର ବାଆଁକଡ଼କୁ ମାଡ଼ିଚାଲିଲା। ଯଥାସମ୍ଭବ ନିଆଁ, ଭୟଙ୍କର ଶବ୍ଦ, ଧୂଆଁ ଓ ଉତ୍ତାପଠାରୁ ଦୂରେଇ ରହିବାକୁ ଚେଷ୍ଟାକଲା।

ଜଣାପଡୁଥିଲା, ଯେଉଁ ଜୀବଜନ୍ତୁମାନେ ଯିଏ ଯେମିତି ରାସ୍ତା ପାଇଥିଲେ, ସବୁ ପଳାଇଥିଲେ। ରାସ୍ତା ଅଟକାଇବା ଏବେ ବନ୍ଦ ହୋଇଯାଇଥିଲା।

''ଆମେ ଆଉ ଅଟକିବା ନାହିଁ।'' ରୋମି ତା'ର ଦାନ୍ତ ରଗଡ଼େଇ କହିଲା।

''ହାତୀ ଆସିଲେ ମଧ ନୁହେଁ।''

''ଆମେ ପାଖେଇ ଆସିଲେଣି।'' ତେଜୁ ଗର୍ବରେ ତା' ମୁଣ୍ଡ ଉପରକୁ ଉଠାଇ କହିଲା।

ଗୋଟାଏ ଶିଆଳ, ଗରମ ଧୂଆଁ ଭିତରୁ ବାହାରି ଆସି ମରିଗଲା କିମ୍ବା ଅଣନିଶ୍ୱାସୀ ହୋଇପଡ଼ିଲା ଭଳି ରାସ୍ତା ମଝିରେ ପଡ଼ିଗଲା। ରୋମି ଅଟକିଲା ନାହିଁ। ସେ ଜନ୍ତୁଟିକୁ ଆଡ଼େଇ ଚାଲିଗଲା। ତା'ପରେ ସେ ସମସ୍ତ ବଳ ଖର୍ଚ୍ଚକରି ଶେଷ ଚେଷ୍ଟା କଲା।

ସେ ଶେଷ ଶହେ ଗଜକୁ ସବୁଠୁ ଅଧିକ ବେଗରେ ଅତିକ୍ରମ କଲା ଓ ତା'ପରେ ସେମାନେ ଜଙ୍ଗଲରୁ ବାହାରି ଆସିଲେ। ନଦୀ

ଆଡ଼କୁ ଯାଇଥିବା ଗଡ଼ାଣି ରାସ୍ତାରେ ପ୍ୟାଡ଼େଲ ମାରି ସେ ସାଇକେଲ୍‌କୁ ଗଡ଼ାଇ ଦେଲା ।

"ଦେଖ !" ତେଜୁ ପାଟିକଲା, "ପୋଲରେ ନିଆଁ ଲାଗି ଯାଇଛି !"

ଛୋଟ କାଠପୋଲଟି ଏବେ ଜଳନ୍ତା ଅଙ୍ଗାରହୋଇ ଭାସି ଯାଉଥିଲା ଏବଂ ଶୁଖିଲା ପୁରୁଣା ଖୁଣ୍ଟ ଗୁଡ଼ାକରେ ଖୁବ୍ ଜଲ୍‌ଦି



ନିଆଁ ଲାଗିଯାଇଥିଲା। ଏବେ ଏଗୁଡ଼ିକ ଭୟଙ୍କର ଭାବେ ଜଳୁଥିଲା।

ରୋମି ବିବ୍ରତ ହେଲାନାହିଁ। ସେ ରାସ୍ତାକୁ ଛାଡ଼ି, ବାଲି ଓ ଗୋଡ଼ି ଉପରେ ସାଇକେଲ୍ ଚଳାଇଲା। ତା'ପରେ ଗୋଟେ ଝଟକାରେ ସେମାନେ ନଦୀ କୂଳକୁ ଗଡ଼ିଗଲେ ଓ ପାଣି ଭିତରେ ପଡ଼ିଗଲେ।

ତା'ପର ମୁହୂର୍ତ୍ତରେ ସେମାନେ ଜାଣିଲେ ଯେ, ପାଣି ଭିତରେ ପଡ଼ିଯାଇ ଅନ୍ଧାର ଭିତରେ ଜଣେ ଅନ୍ୟଜଣଙ୍କୁ ଖୋଜିବାକୁ ଚେଷ୍ଟା କରୁଥିଲେ।

"ବଞ୍ଚାରେ!" ତେଜୁ ଚିତ୍କାର କଲା। "ମୁଁ ବୁଡ଼ି ଯାଉଛି।"

# 6

"ପିଲାଳିଆମି କରନା", ରୋମି କହିଲା । "ପାଣି ବେଶୀ ଗହୀର ନୁହେଁ । କେବଳ ଜଙ୍ଘ ପର୍ଯ୍ୟନ୍ତ ହେବ । ଏଇଠିକୁ ଆ' ଓ ମୋତେ ଜାବୁଡ଼ି ଧର ।"

ଟେଲୁ ପାଣି ଏଡ଼େଇ ଆସିଲା ଓ କମରପେଟି ଦ୍ୱାରା ରୋମି ଦେହରେ ବାନ୍ଧି ହୋଇଗଲା ।

"ପାଣି ବହୁତ ଥଣ୍ଡା," ସେ କହିଲା । ତା' ଦାନ୍ତ କଡ଼ମଡ଼ ହେବାକୁ ଲାଗିଲା ।

"ତୁ କ'ଣ ଫେରିଯାଇ ସେକି ହେବା ପାଇଁ ଚାହୁଁଛୁ କି ?" ରୋମି ପଚାରିଲା । କିଛି ଲୋକ କେବେ ବି ସନ୍ତୁଷ୍ଟ ହୁଅନ୍ତି ନାହିଁ । ଆ', ମୋତେ ସାଇକେଲ୍ ଉଠାଇବାରେ ସାହାଯ୍ୟ କର । ଏହା ଏଇଠି ତଳେ ପଡ଼ିଛି, ଠିକ୍ ଆମେ ଠିଆ ହୋଇଥିବା ସ୍ଥାନ ପାଖରେ ।

ସେମାନେ ଦୁଇଜଣ ମିଶି ସାଇକେଲ୍‌କୁ ପାଣିରୁ ଉଠାଇବାରେ ସମର୍ଥ ହେଲେ ଓ ତାକୁ ସିଧା ଠିଆକଲେ ।

"ଏବେ ଏହା ଉପରେ ବସି ପଡ଼," ରୋମି କହିଲା । "ମୁଁ ତୋତେ ଠେଲି-ଠେଲି ନେଇଯିବି ।"

"ଆମେ ଭାସିଯିବା", ଟେଲୁ କହିଲା ।

"ନା' ଭାସିବା ନାହିଁ । ବର୍ଷର ଏଇ ସମୟରେ ନଇରେ ବେଶୀ ପାଣି ନଥାଏ । କିନ୍ତୁ ମଝିରେ ଏହାର ବେଗ ଟିକେ ଅଧିକ, ସେଥିଲାଗି ସ୍ଥିର ହୋଇ ବସ । ଠିକ୍ !"

"ଠିକ୍"। ଡେଜ୍ଜୁ ଡରିଡରି କହିଲା।

ରୋମି ଗୋଟେ ହାତରେ ସିଟ୍ ଓ ଅନ୍ୟହାତରେ ହେଣ୍ଡଲକୁ ଧରି ସାଇକେଲକୁ ନଈ ପାରକରିବାରେ ଲାଗିଲା। ଗ୍ରୀଷ୍ମର ଏହି ମଝି ସମୟରେ, ନଈରେ ପାଣି ଓ ସୁଅ ଜମାହୋଇ ଯାଇଥିଲା, ତେବେବି, ମଝି ନଈରେ ଖୁବ୍ ବେଗରେ ସୁଅ ବୋହୁଥିଲା। କିନ୍ତୁ ଜଳନ୍ତା ଜଙ୍ଗଲ ଭିତରୁ ନିରାପଦରେ ବାହାରି ଆସି ଥିବାରୁ ଛୋଟ ନଈଟି ତାକୁ କୌଣସି ପ୍ରକାର କ୍ଷତି ପହଞ୍ଚାଉ ବୋଲି ସେ ଚାହୁଁ ନଥିଲା।

ସେ ତା' ଜୋତା ଗୁଡ଼ିକ ହଜିଯିବାର ଥିଲା ବୋଲି ଭାବି ଫିଙ୍ଗିଦେଲା; ଏବଂ ନଦୀ ଭିତରେ ପଡ଼ିଥିବା ଖସଡ଼ା ପଥର ଗୁଡ଼ିକୁ ତା' ପାଦ ଆଙ୍ଗୁଳିରେ ଚାପି ଧରିଲା, ସେ ନିଜକୁ ସ୍ଥିର ରଖିବା ଓ ସାଇକେଲ ଏବଂ ତେଜ୍ଜୁକୁ ମଝି ସୁଅରୁ ଆଣିବା ପାଇଁ ଧ୍ୟାନ ଦେଲା। ପାଣି ଆସି ତା' ଛାତିକୁ ଲାଗିଲା ଏବଂ ତେଜ୍ଜୁକୁ ପାଣିର ସ୍ରୋତ ଟିକେ ବେଶି ଜଣା ପଡୁଥିଲା। କିନ୍ତୁ ଯେତେବେଳେ ସେମାନେ କମ୍ ପାଣିରେ ଆସି ପହଞ୍ଚିଲେ, ତେଜ୍ଜୁ ଓହ୍ଲାଇ ପଡ଼ିଲା ଓ ରୋମିକୁ ସାଇକେଲ୍ ଠେଲିବାରେ ସାହାଯ୍ୟ କଲା।

ସେମାନେ ଆରପାଖ କୂଳରେ ପହଞ୍ଚିଗଲେ ଏବଂ ଘାସ ଉପରେ ବସି ପଡ଼ିଲେ।

"ଆମେ ଏବେ ବିଶ୍ରାମ ନେଇ ପାରିବା," ରୋମି କହିଲା। କିନ୍ତୁ ସାରା ରାତି ନୁହେଁ।- ମୁଁ ବାପାଙ୍କୁ ଦେବାପାଇଁ କିଛି ଔଷଧ ଆଣିଛି।" ସେ ତା' ପକେଟରେ ହାତ ମାରିଲା ଓ ଦେଖିଲା ଯେ, ଖୋଳରେ ଥିବା ବଟିକାଗୁଡ଼ାକ ଭିଜି ଯାଇଛି। "ଓଃ! ଠିକ୍ ଅଛି, ଯେମିତି ହେଲେ ବି ସେ ଏଗୁଡ଼ିକୁ ପାଣି ସହ ଖାଇଥାନ୍ତେ", ସେ କହିଲା।

ସେମାନେ ଲକ୍ଷ୍ୟ କଲେ ଯେ, ନିଆଁ ପୂରା ବଣ ସାରା ଖେଳିଯାଇଥିଲା। ଯେଉଁ ରାସ୍ତାରେ ସେମାନେ ଆସିଲେ ତାକୁ ବି

ସେ ପାରିକରି ଯାଇଥିଲା। ଆକାଶଟା ଖୁବ୍ ଲାଲ୍ ଦେଖାଯାଉଥିଲା ଓ ନଈପାଣି ଆକାଶର ରଙ୍ଗକୁ ପ୍ରତିବିମ୍ବିତ କରୁଥିଲା।

କେତେକ ହାତୀ ନଈ ଭିତର ଦେଇ ତାଙ୍କ ରାସ୍ତାରେ ଯାଉଥିଲେ। ସେମାନେ ନିଜ ଶୁଣ୍ଢରେ, ଜଣେ ଅନ୍ୟଜଣଙ୍କ ଉପରେ ପାଣି ପକାଇ ଥଣ୍ଡା ହେଉଥିଲେ। ତା' ପଛକୁ ହରିଣ ଓ ଅନ୍ୟ ଜୀବଜନ୍ତୁ ଥିଲେ।

"କଣ ଭାବୁଛୁ ?" ତେଜୁ ପଚାରିଲା।

ରୋମି କହିଲା, "ମୁଁ ଭାବୁଛି ଯେ, ଯଦିବା ନିଆଁ ଦିନେ ବା ଦୁଇ ଦିନରେ ଲିଭିଯିବ, ତେବେ କି ପୋଲ ତିଆରି ହେବାକୁ ଅନେକ ସମୟ ଲାଗିଯିବ। ତେଣୁ ସ୍କୁଲରୁ ସୁନ୍ଦର ଲମ୍ବା ଛୁଟି ମିଳିବ।"

"କିନ୍ତୁ ତୁ ତ ନଈ ପାରିହୋଇ ଚାଲିଯାଇ ପାରିବୁ," ତେଜୁ କହିଲା, "ତୁ ଏବେତ ଏହାହିଁ କଲୁ।"

"ଅସମ୍ଭବ," ରୋମି କହିଲା। "ଏଥିରେ ମଣିଷ ଭାସିଯିବ।"

Printed at I M H Press (P) Ltd., Okhla Industrial Area, Phase I, New Delhi - 20

